# ହସ୍ତାକ୍ଷର

## (କ୍ଷୁଦ୍ର ନାଟକ ସଂକଳନ)



ଲେଖିକା :

**ପ୍ରମିଳା ପତି**

ପ୍ରକାଶକ :

**ଶ୍ରୀଯୁକ୍ତ ରବି ମିଶ୍ର**

କାଠଯୋଡ଼ି ରୋଡ଼, ମଧୁପାଟଣା, କଟକ-୧୦

Digitized by srujanika@gmail.com

# ହସ୍ତାକ୍ଷର

(କ୍ଷୁଦ୍ର ନାଟକ ସଂକଳନ)

ଲେଖିକା :

ଶ୍ରୀମତୀ ପ୍ରମିଳା ପତି

ମୋ : ୯୭୭୭୧୮୦୯୪୯

ପ୍ରକାଶକ :

ଶ୍ରୀଯୁକ୍ତ ରବି ମିଶ୍ର
କାଠଯୋଡ଼ି ରୋଡ୍, ମଧୁପାଟଣା,
କଟକ-୧୦
ମୋ : ୯୮୬୧୧୫୯୪୯୪

ପ୍ରଥମ ସଂସ୍କରଣ : ୨୦୧୫

ଅକ୍ଷର ସଜ୍ଜା : ଜି.କେ. ପ୍ରିଣ୍ଟର୍ସ
ଡଗରପଡ଼ା, କଟକ-୨

ମୋ : ୯୩୩୮୧୨୩୨୩୧

ମୂଲ୍ୟ : ₹.୧୧୦.୦୦

**Hastakshyara**
**(A Short Drama)**

Writer :
**Smt. Pramila Pati**
**M : 9777180949**

Published by :
**Sj. Rabi Mishra**
Kathajodi Road,
Madhupatana
Cuttack-10
M. 9861159494

First Publication : 2015

Laser Typeset :
**G.K. printers**
Dagarpada, Ctc-2
M.9338123231

Price : ₹.110.00

Digitized by srujanika@gmail.com

## ଉତ୍ସର୍ଗ

ଓଡ଼ିଶାର
ଅଗଣିତ ସାହିତ୍ୟ ଓ
ସଂସ୍କୃତିପ୍ରେମୀ ପାଠକ,
ପାଠିକାଙ୍କ କରକମଳରେ
ମୋର ଏଇ
ଛୋଟ ଉପହାର
**'ହସ୍ତାକ୍ଷର'** ।

ପ୍ରମିଳା ପତି

*Digitized by srujanika@gmail.com*

## ମୋ କଥା...

ଆକାଶବାଣୀ କଟକ କେନ୍ଦ୍ରରୁ ମୋର କେତୋଟି ନାଟକ ପ୍ରଚାରିତ ହେବା ପରେ ଅଧିକ ଲେଖିବା ପାଇଁ ଉତ୍ସାହିତ ହେଲି । ମୋ ସ୍ୱାମୀ ଶ୍ରୀଯୁକ୍ତ ରବି ମିଶ୍ର ଓଡ଼ିଶାର ଜଣେ ସଫଳ ଅଭିନେତା ହୋଇଥିବାରୁ ତାଙ୍କ ପ୍ରେରଣା ମଧ୍ୟ ମୋ ପାଇଁ ବିଶେଷ ଭାବରେ ଥିଲା । ଉଦୟଭାନୁ ସାହିତ୍ୟ ସଂସଦ (କଟକ) ଓ କାଠଯୋଡ଼ି ମହିଳା ସମିତି (କଟକ) ତରଫରୁ ମୋର ଅନେକଗୁଡ଼ିଏ ଏକାଙ୍କିକା ଓ ନାଟିକା ଆମ୍ଭମାନଙ୍କ ଦ୍ୱାରା ଅଭିନୀତ ହୋଇ ଉଚ୍ଚ ପ୍ରଶଂସିତ ହେଲା । ଏହାହିଁ ମତେ ନାଟକ ରଚନା କରିବାକୁ ଅଧିକ ଉତ୍ସାହିତ କଲା । 'ହସ୍ତାକ୍ଷର' ନାଟିକା ସଂକଳନ ମାଧ୍ୟମରେ ଆମ ସମାଜରେ ଓ ଆମ ଦୈନନ୍ଦିନ ଜୀବନରେ ଘଟୁଥିବା କେତେକ ଘଟଣାକୁ ରୂପ ଦେବାକୁ ଚେଷ୍ଟାକରିଛି । ଜଣେ ଗୀତିକବି ହୋଇଥିବାରୁ ସଂଳାପ ରଚନାରେ ହୁଏତ ଅନେକ ଦୋଷ ତ୍ରୁଟି ରହିଯାଇଥିବ । ଏଣୁ ସହୃଦୟତାର ସହ ଗଠନମୂଳକ ମତାମତ ପ୍ରଦାନ କରିବାକୁ ସବିନୟ ଅନୁରୋଧ ।

ପ୍ରମିଳା ପତି

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com




କମଳା

ରାଧୁ

ବିଜୟ

ହରିଶ

ମୁନା

Digitized by srujanika@gmail.com

## ॥ ୧ମ ଦୃଶ୍ୟ ॥

(ବିଜୟବାବୁଙ୍କ ଘର । ସମୟ ସକାଳ ୯ଟା)

(ଭିତରୁ କମଳା କହି କହି ଆସିଲେ)

କମଳା — ରାଧୁ ! ରାଧୁ ସକାଳ ପହରୁ ସେଇ ବଗିଚାଟା ଭିତରେ ପଶି କ'ଣ କରୁଛି କେଜାଣି । ଡାକିଲେ ଜବାବ୍ ଦଉନି । ଘରଦ୍ୱାର ସଫା କରି କରି ଅଣ୍ଟାପିଠି ଲାଗିଗଲାଣି । କୋଉ ଭରସାରେ ଯା'କୁ ଘରଦ୍ୱାର ଦାୟିତ୍ୱ ଦେଇ ଯାଇଥିଲେ କେଜାଣି- ଆରେ ରାଧୁ

ରାଧୁ — ଯାଉଛି ମାଆ (ଆସିଛି) କାହିଁକି ଡାକୁଥିଲ କି ମାଆ ?

କମଳା — (ବିରକ୍ତ ହୋଇ) ଏତେବେଳେ ଆସୁଛୁ? ସକାଳୁ ଆସି ଦିନ ଦି'ପ୍ରହର ହେଲାଣି । ସେଇ ବଗିଚା ଭିତରେ ପଶି କ'ଣ କରୁଥିଲୁ ଶୁଣେ ?

ରାଧୁ — ସେ କଥା ପଚାରନି ମାଆ ! ଆଣ୍ଠୁଏ ବହଳର ଘାସ ଅନାବନା ଗଛରେ ବଗିଚାଟା କି ଜଙ୍ଗଲିଆ ହେଇଥିଲା । ସବୁ ସଫା କରିଦେଇଛି । ଦେଖିବ ଚାଲୁନ । କେମିତି ବଗିଚାଟା ହସିଉଠୁଛି ।

କମଳା — ଥାଉ ଥାଉ । ଯାଡ଼େ ଘର ଭିତରେ ମୂଷାଗାତ ଅଳିଆ ସଫା କରି କରି ମୋ ଦେହ ଦରଜ ହୋଇଗଲାଣି । ତୋର ଆଗେ ବଗିଚା କାମ ନୁହେଁ ?

ରାଧୁ — କାହିଁକି ମାଆ ? ନକ୍ଷିବୋଉ କ'ଣ ଆସିନି କି ? ସିଏ ତ ଘରଦ୍ୱାର ଲିପିପୋଛି ଚିକ୍କଣ କରିଦେବ, ତମେ କ'ଣ କାଦୁଅ ପାଣି କାମ ପାରିବ...

କମଳା — ରଖ୍ ତୋ ନକ୍ଷିବୋଉ । ସିଏ ସିନା ଲିପିପୋଛି ଦେଲା । ଜିନିଷପତ୍ର ସଜାଡ଼ିବ କିଏ ?

Digitized by srujanika@gmail.com

ରାଧୁ　　ମାଆ ! ମୁଁ କରିବି ଦେଖିବେ ? ?

କମଳା　　ଆଉ ତୋ କାମ ସେଇ ବଗିଚା ସଜେଇବା ନୁହେଁ ?

ରାଧୁ　　ହଁ ମା ! ବୁଢ଼ାବାବୁ ଥିଲାବେଳେ ମୋ ସାଙ୍ଗରେ ନିଜେ ସେ ବଗିଚାରେ କାମ କରୁଥିଲେ । ପୁଅ ଝିଅଭଳି ଗଛଲତାକୁ ବଢ଼େଇଥିଲେ । ଶୁଖିଲା ପତରଟିଏ ବି ବଗିଚାରେ ପକେଇ ଦଉ ନଥିଲେ । ଆଉ ସେଇ ଆମ୍ବ ପଣସ, ନଡ଼ିଆ, ପିଜୁଳି ଗଛରେ କେତେ ଫଳ ନଦି ହୋଇ ପଡୁଥିଲା । ଜାତିଜାତିକା ଫୁଲଗଛରେ ଫୁଲ ଫୁଟି ବାସନା ଚହଟୁଥିଲା । ସତରେ ମ ମାଆ ! ବଗିଚା ଭିତରକୁ ପଶିଗଲେ ନା ଭୋକଶୋଷ ମରିଯାଉଥିଲା । ଜାଣିଛ ନା ମାଆ- ବୁଢ଼ାବାବୁ ସବୁବେଳେ ସେଇ ବଗିଚାରେ ବସି ଦୁଃଖ ଚିନ୍ତାକୁ ଭୁଲିଯାଉଥିଲେ । ମତେ ପାଖରେ ବସେଇ ନିଜ ପିଲାବେଳଠାରୁ ଆରମ୍ଭ କରି ବଡ଼ବାବୁଙ୍କ କଥା ଗପୁଥିଲେ । ଆହା ! ତାଙ୍କ ଭଳି ଲୋକ ମିଳିବା କଷ୍ଟ । ବଡ଼ବାବୁ ଚାଲିଗଲେ । ବଗିଚା ବି ଉଜୁଡ଼ିଗଲା । ଗଛଲତା ବି ତାଙ୍କ ସିନିହଁ ଅଭାବରୁ ମଉଳିଗଲେ... (କାନ୍ଦିଛି) ।

କମଳା　　କାହିଁକି ସେ ଲୁହ ଢାଳୁଛୁ କହିଲୁ ? ଆରେ ବଡ଼ବାବୁ ସିନା ଚାଲିଗଲେ ହେଲେ, ତତେ ପରା ଏ ଘର ଜମିବାଡ଼ିର ଦାୟିତ୍ୱ ଦିଆଯାଇଥିଲା । ତୁ କ'ଣ କରି ପକେଇଲୁ ?

ରାଧୁ　　ମାଆ ମୋର ଏଥିରେ ଦୋଷ କ'ଣ ? ମୁଁ ତ ଚାକରବାକର ଲୋକ । ଗରିବ ମଣିଷ । ଘରେ ପୁଅ, ଦି'ଟା ବଢ଼ିଲା ଝୁଅ । ଆମେ ଦି'ପ୍ରାଣୀ । କେତେ କୁଆଡ଼କୁ ନିଘା ରଖିବି ? ଯେତିକି ପାରିଲି ସେତିକି କରୁଥିଲି । ଘରର ମାଲିକ କଥା ଯେମିତି ଲୋକେ ଶୁଣିବେ ଚାକର କଥା କିଏ ଶୁଣିବ ? ଯିଏ ଯୁଆଡ଼େ ମାରିପିଟି ଖାଇଲେ... ମୋ ହାତରେ ଧନ ଥିଲେ ସିନା ମୁଁ ଘର ଛପର କରିଥାନ୍ତି... ବଡ଼ବାବୁ ତ ଶୁଦ୍ଧିକ୍ରିୟା ସାରି ଚାଲିଗଲେ ଯେ ଆଉ ଆସିଲେନି...

Digitized by srujanika@gmail.com

କମଳା : ହଉ... ତୋର ସେ ହିତ ଉପଦେଶଗୁଡ଼ା ରଖିଦେ । ପନ୍ଦର ଦିନ ହେବ ତୋ'ଠାରୁ ସେଇକଥା ଶୁଣି ଶୁଣି କାନ ବଧିରା ହେଇ ଗଲାଣି । ମଫସଲି ଲୋକଗୁଡ଼ାକ ପରା ଏଇଆ...

ବିଜୟ (ବାହାରୁ ଆସିଛନ୍ତି) କାହାକୁ ମଫସଲି କହୁଛ କମଳା ? ଏତେ ରାଗ କାହା ଉପରେ ? ତମ ମନରୁ ସହରୀ ଭୂତଟା ଆଜିଯାଏ ବି ତମକୁ ଅନ୍ଧ କରିରଖିଛି ।(ରାଧୁକୁ ଦେଖି) ଆରେ ରାଧୁ- କଥା କ'ଣ ?

ରାଧୁ ବାବୁ ! ମାଆ ମୋ ଉପରେ ରାଗିକି ଖପା ?

ବିଜୟ କାହିଁକି ? କ'ଣ ହେଇଛି କମଳା ?

କମଳା ରାଧୁକୁ ପଚାରୁନ ! ସବୁ କଥାରେ ତ ମୋ ଦୋଷ ବାଛିବା ତମର ଅଭ୍ୟାସ ।

ରାଧୁ ନାଇଁ ବାବୁ ! ମୋର ଭୁଲ୍ ହେଇଛି । ମୁଁ ତ ମୂରୁଖ ନୋକ । ଘରଦ୍ୱାର ସଜେଇବା ମତେ କି ଜଣା । ସେଗୁଡ଼ା ସିନା ମାଇପିନୋକଙ୍କ କାମ । ଏଇ କଥା କହିଲି ବୋଲି ମାଆ ରାଗିଛନ୍ତି ।

ବିଜୟ ତୁ ଠିକ୍ କହିଛୁ ରାଧୁ । ତୋର ଏଥିରେ କିଛି ଭୁଲ୍ ନାହିଁ ।

କମଳା କ'ଣ କହିଲ ? ଆଉ କ'ଣ ସବୁ ଭୁଲ୍ ମୋରି ?

ବିଜୟ ତମକୁ ବି ମୁଁ ସଂପୂର୍ଣ୍ଣ ଦୋଷୀ କରିପାରୁନି କମଳା । ଏ ଭୁଲ୍‌ରେ ମୁଁ ମଧ ଅଂଶୀଦାର । ମୁଁ ଏ ଘରର ମାଲିକ ହେଇ ଯାହା ନ କରିପାରିଛି, ରାଧୁ ଚାକର ହେଇ ଶହେଗୁଣ କରିପାରିଛି । କିଛି ନ ହେଲେ ଖଞ୍ଜାଘରକୁ ତ ଯତ୍ନରେ ରଖିପାରିଛି । ଆଜି ଯଦି ଏ ଘରର ଚାରିଟା କାନ୍ଥ ନଥାନ୍ତା, ତା'ହେଲେ ଆମେ ମୁଣ୍ଡ ଗୁଞ୍ଜିଥା'ନ୍ତେ କୋଉଠି ? Retired ପରେ ରାସ୍ତାକଡ଼ ହିଁ ଆମର ଆଶ୍ରୟସ୍ଥଳ ହୋଇଥାନ୍ତା ।

କମଳା ତମେ ସିନା ଘରର ଦାୟିତ୍ୱ ନେଇଥାନ୍ତ । ମୁଁ କ'ଣ କରିଥାନ୍ତି ଯେ... Retired ପରେ ଗାଁକୁ ଆସିଲା ଦିନଠୁ ତମେ ଖାଲି ମୋରି ଦୋଷ ବାଛି ଚାଲିଛ...

Digitized by srujanika@gmail.com

ବିଜୟ ତମେ କ'ଣ ପାରିନଥାନ୍ତ କମଳା ? ସବୁ ପାରିଥାନ୍ତ, କେତେଥର ମୁଁ ତମକୁ ନ ବୁଝାଇଛି... ପିଲାମାନଙ୍କୁ ନେଇ ଗାଁକୁ ଆସିବାକୁ। ବାପା ଚାଲିଗଲା ପରେ ତମେ ଯଦି ଗାଁରେ ରହିଥାନ୍ତ, ତା'ହେଲେ ଆଜି ଏ କଷ୍ଟ ଭୋଗିବାକୁ ପଡ଼ିନଥାନ୍ତା... ତମେ କ'ଣ ମୋ କଥା ଶୁଣିଲ ? କିଛି ନା କିଛି ଅସୁବିଧାର ବାହାନା କରି ମୋ କଥାକୁ ଟାଳିଦେଲ । କାଲିପରି ବାପାଙ୍କ କଥା ମନେପଡୁଛି ।

**(Flash back)**

## ॥ ୨ୟ ଦୃଶ୍ୟ ॥

(କଟକ ସହର । ବିଜୟବାବୁଙ୍କ ଭଡ଼ାଘର । ରାସ୍ତାରେ ଚାଲିଯାଉଥିବା ଗାଡ଼ି ମଟରର ଶବ୍ଦ ଶୁଭୁଛି । ବୁଲାବିକାଳୀଙ୍କର ପାଟି ଶୁଭୁଛି । ପାଖଆଖରୁ ମାଇକ୍‌ରୁ Film ଗୀତର ସ୍ୱର ଭାସି ଆସୁଛି । ସମୟ ସନ୍ଧ୍ୟା
ବିଜୟ ବାବୁଙ୍କ ବାପା ହରିଶବାବୁ ଓ ତାଙ୍କ ପୁଅ ମୁନା କଥାବାର୍ତ୍ତା ହେଉଥିଲେ)

ହରିଶ ଆରେ ମୁନା ! ବାପା କ'ଣ ଅଫିସରୁ ଫେରିନାହାନ୍ତି କି ?

ମୁନା ନାଇଁ ଜେଜେ ! ପାଞ୍ଚଟା ବାଜିଲା ଆଉ ଅଧଘଣ୍ଟା ପରେ ଆସିଯିବେ ।

ହରିଶ ତୋ ପଢ଼ାପଢ଼ି କେମିତି ଚାଲିଛି କିରେ ?

ମୁନା ସବୁ ଠିକ୍ ଚାଲିଛି । ପରୀକ୍ଷା ତ ଦେଇଛି result ବାହାରିଲା ପରେ ଯାହା ହେବ ।

ହରିଶ ଆଚ୍ଛା ମୁନା । ପରୀକ୍ଷା ତ ସରିଲାଣି, ତୁ ଚାଲୁନୁ ଗାଁରେ ବୁଲିଆସିବୁ । ଗାଁରେ ଏକୁଟିଆ ମତେ ଭଲଲାଗୁନି ।

ମୁନା ମୁଁ କ'ଣ ମନା କରୁଛି ବୋଉ ପରା ମନା କରୁଛି– ବୋଉ କହୁଛି ଗାଁ'କୁ ଗଲେ ମୋ ସ୍ୱାସ୍ଥ୍ୟ ଖରାପ ହେଇଯିବ । ଗାଁ' ଲୋକଙ୍କ ସାଂଗରେ ମିଶିଲେ ମୁଁ ପାଠପଢ଼ି ପାରିବିନି । ଆଚ୍ଛା ଜେଜେ, ତମେ କଟକ ଚାଲିଆସୁନା ଏକୁଟିଆ bore ଲାଗୁଥିବ ।

Digitized by srujanika@gmail.com

ହରିଶ (ହସିଛନ୍ତି) ଆରେ ମୁନା- ମୁଁ ଯଦି କଟକ ଚାଲିଆସିବି, ଘରଦ୍ୱାର ଜମିବାଡ଼ି ଖବର ବୁଝିବ କିଏ ? ତା'ଛଡ଼ା ମତେ ଏଠି ଭଲ ଲାଗିବନି ।

ମୁନା କାହିଁକି ଜେଜେ ? ଏଠି କ'ଣ ଅଭାବ ଅଛି ?

ହରିଶ ଏଠି କିଛି ଅଭାବ ନାହିଁ ଯେ, ହେଲେ ଗାଁ ଭଳି ସହରର ଆଲୋକ, ପବନ, ପାଣି, ହସଖୁସି ସବୁଥିରେ ସତେଜତାର ଅଭାବ ଅଛି । ଦେଖୁନୁ- ଏଠି କିଏ କାହା ସହିତ ମନଖୋଲି ପଦେ କଥା କହୁଛି- କାହା ଦୁଃଖସୁଖ କିଏ ବୁଝୁଛି ? ସହରରେ ମନର ଅଭାବ ବହୁତ ବେଶି-

ମୁନା That's the point ! ତମେ ଠିକ୍ କହିଛ ଜେଜେ । ସହରରେ ସମସ୍ତେ ନିଜ ନିଜ ଧନ୍ଦାରେ ବ୍ୟସ୍ତ । ଏଠି ଖାଲି ଜଣେ ଆଉ ଜଣକୁ ହରେଇ ସଭ୍ୟତାର ଶୀର୍ଷାସନରେ ବସିବାକୁ ଚିନ୍ତିତ । ସହରୀ ଜୀବନ ଏକ ଯାନ୍ତ୍ରିକ ଜୀବନ- ଏଠି ସବୁ ମପାଚୁପା । କଥା, ହସଖୁସି, ଚାଲି-ଚଳଣି ସବୁ... ସବୁକିଛି । ମତେ ଏଠି ମୋଟେ ଭଲଲାଗୁନି-

ହରିଶ ହଁରେ ମୁନା- ଏଠି ଖାଲି ସବୁଆଡ଼େ ଭିଡ଼ । ପାଟିତୁଣ୍ଡ କେଁ କଟର ସ୍ୱର । ସବୁ ଭେଜାଲ । ମଣିଷ ଜୀବନର ଶାନ୍ତି କ'ଣ ଏମିତି ମିଳେ ?

ମୁନା ମୁଁ କ'ଣ ସ୍ଥିର କରିଛି ଜାଣିଛ ଜେଜେ ? ମୋର ପାଠପଢ଼ା ସରିଲେ ମୁଁ ଗାଁରେ ରହିବି । ଚାଷବାସ କରିବି । ଗାଁ ଲୋକଙ୍କୁ ବହୁତ କଥା ଶିଖେଇବି ।

ହରିଶ ସତରେ ମୁନା ? ତୁ ସତ କହୁଛୁ ?

ମୁନା ହଁ ଜେଜେ । ମୁଁ ସତ କହୁଛି । ପାଠପଢ଼ି ଚାକିରି କଲେ ମଣିଷ ଯେ, କେବଳ ସହରରେ ରହିବ ଏହାର କିଛି ମାନେ ନାହିଁ । ଶିକ୍ଷାର ସଭ୍ୟତାର ବିକାଶ ଗାଁ ମାଟିରୁ ହିଁ ହେବା ଉଚିତ । ତା'ହେଲେ

Digitized by srujanika@gmail.com

ସିନା ଆମେ ନିଜକୁ ପ୍ରଗତିବାଦୀ ବୋଲି କହିପାରିବା ।

ହରିଶ — ତୁ ଠିକ୍ କହିଛୁରେ ମୁନା । ଗାନ୍ଧିଜୀ ପରା ରାମରାଜ୍ୟର ପ୍ରତିଷ୍ଠା ଗାଁ ମାଟିରୁ ହିଁ ହେବା ଉଚିତ ବୋଲି କହିଥିଲେ ।

(ସାଇକେଲ ଘଣ୍ଟି ଶୁଭିଛି)

ମୁନା — ଏଇ ବାପା ଆସିଗଲେ ।

ବିଜୟ — (ଆସିଛନ୍ତି) ବାପା । ଆପଣ କେତେବେଳେ ଆସିଲେ ? (ପ୍ରଣାମ କରିଛନ୍ତି)

ହରିଶ — ଥାଉ ଥାଉ ! ମୁଁ ୧୦ଟା ବେଳେ ଆସି ପହଞ୍ଚିଲି ।

ବିଜୟ — ଆଉ ସବୁ ଭଲ ତ । ଆରେ ମୁନା, ଜେଜେ ଚା'ଜଳଖିଆ ଖାଇଲେଣି ନା । ?

ହରିଶ — ତୁ ବ୍ୟସ୍ତ ହନା । ବୋହୂ ସବୁ ଦେଇଛନ୍ତି- ତୁ ଗଲୁ ଆଗେ ମୁହଁ ହାତ ଧୋଇ କ'ଣ ଟିକେ ଖାଇବୁ ।

ମୁନା — ବାପା ! ଜେଜେ ଗାଁ'ଠୁ ବଢ଼ିଆ ଛେନା, ବସାଦହି ଆଣିଛନ୍ତି । ଆଉ ବାରି ଗଛରୁ ଯେଉଁ କଦଳୀ ଆଣିଛନ୍ତି ନା ଦି'ଟା ଖାଇଦେଲେ ପେଟେ । ଏଠି ତା'ର ଦାମ୍ ଟଙ୍କାକରୁ କମ୍ ହେବନି ।

ବିଜୟ — ସହର ବଜାର ଜାଗାରେ କ'ଣ ଆଉ ଶସ୍ତାରେ ମିଳୁଛି ଯେ, ସବୁ ସେଇ ଗାଁ ମାନଙ୍କରୁ ଚାଲାଣ ହେଉଛି- ଆଉ ଯାହା ବି ମିଳୁଛି, ସବୁ ଭେଜାଲ- ରଂଗକରା ।

ହରିଶ — ହଉ ! ତୁ ଯାଆ ଅଫିସରୁ ଖଟି ଖଟି ଆସିଛୁ । ଖାଇପିଇ ସାର । ପଛେ କଥାବାର୍ତ୍ତା ।

Digitized by srujanika@gmail.com

ଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓ

## ॥ ୩ୟ ଦୃଶ୍ୟ ॥

(ସମୟ ରାତି । ବିଜୟ, କମଳା ଓ ହରିଶ)

ହରିଶ — ମୁଁ ଗୋଟାଏ କଥା କହୁଥିଲି ବିଜୁ ।

ବିଜୟ — କ'ଣ କହୁନାହାନ୍ତି

ହରିଶ — କଥା କ'ଣ କି! ଦେଖୁଛୁ ତ ମୁଁ ବୁଢ଼ା ହେଇଗଲିଣି । ଏଣିକି କାମଧନ୍ଦାକୁ ଆଉ ପାରୁନି । ତା'ଛଡ଼ା ଆଖିକୁ ଭଲ ଦିଶୁନି କି କାନକୁ ବି ଭଲ ଶୁଭୁନି । ଘରଦ୍ୱାର ଜମିବାଡ଼ିର ଖବର ବୁଝିବାକୁ ବଳ ପାଉନି ।

ବିଜୟ — କାହିଁକି ଖଟୁଛନ୍ତି ବାପା । ରାଧୁ ତ ଅଛି- ତା'ଛଡ଼ା ମୂଲିଆମାନେ କାମ କରୁଥିବେ ।

ହରିଶ — ସବୁ ଠିକ୍ ଚାଲୁଛି ଯେ, ହେଲେ ମୂଲିଆଙ୍କ ଉପରେ ବିଶ୍ୱାସ ରଖି କ'ଣ କାମ କରିହୁଏ ! ନିଜେ ନ ଜଗିଲେ ଫସଲ ପାଇବା ମୁସ୍କିଲ । ତା'ଛଡ଼ା ଘରର ରକ୍ଷଣାବେକ୍ଷଣା କ'ଣ ମୁଁ ଆଉ ପାରୁଛି । ବୋହୂ ଯଦି ଗାଁରେ ରହନ୍ତେ ଭଲହୁଅନ୍ତା ।

ବିଜୟ — ମୁଁ କ'ଣ ମନା କରୁଛି ।

କମଳା — ନାଇଁ ବାପା ! ମୁଁ ଗାଁରେ ରହିବି କେମିତି ? ଇଏ, ଖାଇବାକୁ ହଇରାଣ ହେବେ, ମୁନା ବି ଏଇଠି ପଢୁଛି । ତା'ପାଠପଢ଼ା ନଷ୍ଟ ହେବ ।

ବିଜୟ — ମୁନା ତ ଏଥର ହଷ୍ଟେଲ୍‌ରେ ରହିବ । ମୁଁ ମେସ୍‌ରେ ରହିଯିବିନି ।

କମଳା — ନାଇ ଗାଁ'ରେ ବହୁତ ଅସୁବିଧା । line ନାହିଁ, ପାଇଖାନା ନାହିଁ । ବର୍ଷାଦିନେ ତ ଘର ଅବସ୍ଥା ଯାହା, ତା'ଛଡ଼ା ଗାଁ ଲୋକମାନଙ୍କର ଚାଲିଚଳନ ସହିତ ମୁଁ adjust କରିପାରିବିନି ।

ହରିଶ — ତୁମେ ଭୁଲ୍ କହୁଛ ମାଆ । ଗାଁ ଲୋକ ଅଶିକ୍ଷିତ ହେଇପାରନ୍ତି; କିନ୍ତୁ ଭାରି ସ୍ନେହୀ । ଲାଇନ୍ ତ ସବୁ ଗାଁକୁ ଆସିଗଲାଣି । କେହିନାହାନ୍ତି ବୋଲି ଘରକୁ line ଆସିନି । ତମେ ଯଦି ରହିବ, ସେ ବ୍ୟବସ୍ଥା ମୁଁ କରିଦେବିନି ।

Digitized by srujanika@gmail.com

ବିଜୟ ହଁ କମଳା- ଏବେ ତ ଗାଁମାନଙ୍କରେ ଅନେକ ସୁବିଧା ହେଇଗଲାଣି । Primary health centre ଠାରୁ ଆରମ୍ଭ କରି ସ୍କୁଲ୍, କଲେଜ ପର୍ଯ୍ୟନ୍ତ ସବୁ କିଛିର ବ୍ୟବସ୍ଥା ସରକାର କରିଦେଇଛନ୍ତି । ଗାଁରେ ଅସୁବିଧା କ'ଣ ?

କମଳା ଥରେ ତ କହିଲି- ଗାଁ'ର ପାଣିପବନ ମୋ ଦେହରେ ଚଳିବନି । ମାଟି କାଦୁଅ ଘରେ ମୁଁ ଚଳିପାରିବିନି ।

ହରିଶ ଗାଁ ମାଟିର ସେଇ ଅନ୍ଧାରୀ ଘରେ ତ ଆମର ଜନମ ମାଆ । ତାକୁ ହତାଦର କଲେ କ'ଣ ଆମେ ଚଳିପାରିବା ? ଦିନେନା ଦିନେ ତ ସେଇ ଗାଁ ମାଟିକୁ ଫେରିଯିବାକୁ ପଡ଼ିବ । ଆରେ ବିଜୁ- ତୋର ଚାକିରି ତ ଆଉ ଅଳ୍ପଦିନ ରହିଲା । ଯଦି କିଛି କିଛି ପଇସା ଦିଅନ୍ତୁ, ଘରଟା କୋଠା କରିଦିଅନ୍ତେ ।

ବିଜୟ ମୋ ପାଖରେ ଏତେ ପଇସା କାହିଁ ବାପା । ଦରମା ଗଣ୍ଡାକ ତ ମାସକ ଖର୍ଚ୍ଚକୁ ନିଅଣ୍ଟ । ଜିନିଷପତ୍ରର ଦର ଯାହା ଦେଖୁଛ- ଏଠି ତ ନିଆଁଠାରୁ ପାଣି ପର୍ଯ୍ୟନ୍ତ ସବୁ କିଣା । ସବୁ ଗାଁ'ରୁ ଆପଣ ଚାଉଳ ପଠାଇ ବି ପ୍ରତିମାସରେ ଧାର କରିବାକୁ ପଡୁଛି । ତମେ ତ ଜାଣିଛ ବାପା, ଗଲାବର୍ଷ କୁନି ବାହାଘର କଲି । ସେ ଧାର୍ ଆଜିଯାଏ ଶୁଝା ସରିନି ।

କମଳା ହଁ ବାପା ! ଗାଁ ଖର୍ଚ୍ଚ ଆଉ ସହର ଖର୍ଚ୍ଚ ଭିତରେ ଯଥେଷ୍ଟ ପାର୍ଥକ୍ୟ ଅଛି । ସହରର ସମସ୍ତଙ୍କ ସହିତ adjust କଲାଭଳି ଚଳିବା ଦରକାର । କେତେଟା ଟଙ୍କା ସେ ଦରମା ପାଉଛନ୍ତି ଯେ...ତା' ଛଡ଼ା ଗାଁରେ କୋଠାଘର କ'ଣ ଦରକାର ? ମୁନା କ'ଣ ପାଠଶାଠ ପଢ଼ି ଚାକିରି କଲାପରେ ଗାଁ'ର ଧୂଳିମଳିରେ ଚଳିପାରିବ । ବରଂ ଗାଁର ଜମିବାଡ଼ି ବିକ୍ରି କରି ସହରରେ ଜାଗାଖଣ୍ଡେ କିଣି ଘର କରିବାକୁ ମୋର ଇଚ୍ଛା ।

ହରିଶ ନାଇଁ ବୋହୂ । ସାତପୁରୁଷର ଭିଟାମାଟିକୁ ବିକିଦେବା କ'ଣ ଠିକ୍‌ହେବ ? କଟକରେ ଘର ଖଣ୍ଡେ ସିନା କରିଦେବ, ହେଲେ

Digitized by srujanika@gmail.com

ସାରାଜୀବନ ଦରମା ଟଙ୍କାରେ ଚଳିବ କେମିତି ? ଭବିଷ୍ୟତ ପାଇଁ ରଖିବ କ'ଣ ? ଯେଉଁ ଜମି ଦି'ମାଣ ଅଛି ସବୁ ତ ତୁମର ଓ ମୁନାର । ତାରି ଯତ୍ନ ନେଲେ ତୁମ ସଂସାର ଆନନ୍ଦରେ ଚଳିଯିବ । ଅଭାବ କ'ଣ ଜାଣିବନି । ମୋ ଦିନକାଳ ତ ଆସି ସରିଲା ...

ବିଜୟ ବାପା ଠିକ୍ କହୁଛନ୍ତି କମଳା । କଟକରେ ଜାଗା କ'ଣ ସହଜରେ ମିଳୁଛି । ଗୁଣ୍ଠେ ଜାଗାର ଦାମ୍ ୪୦/୫୦ ହଜାରରୁ କମ୍ ନୁହେଁ ଏତେ ଟଙ୍କା କାହିଁ ଯେ ,ଆମେ ଜାଗା କିଣି ଘର କରିପାରିବା ?

କମଳା ଯେମିତି ହେଉ କଟକରେ ଘର କରିବାକୁ ହିଁ ହେବ । ମୁନାର ସୁବିଧା ଅସୁବିଧା ବୁଝିବା ଆମର କର୍ତ୍ତବ୍ୟ ।

ହରିଶ (ଦୀର୍ଘଶ୍ୱାସ ପକାଇ) ହଉ, ତୁମ ଇଚ୍ଛା । ଘର ସଂସାର ତୁମର ତୁମେ ଯାହା ଠିକ୍ ଭାବୁଛ ତାହାହିଁ କର । ମୁଁ ତ ଶୁଖିଲା ପତର ଆଜି ଅଛି କାଲି ନାହିଁ । ଘର ଧନ ପର ଖାଉଁଛନ୍ତି । ଆଉ ତୁମେ ଏଠି ଅମୂଲ ମୂଲ ଦେଇ ଭେଜାଲ ଜିନିଷ କିଣୁଛ । ମନଟା ସମ୍ଭାଳି ହଉନି ବୋଲି କହିଲି ।

କମଳା ଆପଣ କାହିଁକି ଆମ ଲାଗି ବ୍ୟସ୍ତ ହଉଛନ୍ତି କହିଲେ ବାପା ? ଆମ ଭବିଷ୍ୟତ ଆମେ ଠିକ୍ କରିବୁନି ।

ହରିଶ ନାଇଁରେ ମାଆ । ତମେ ଯେତେବଡ଼ ହେଲେ ବି ମୋ ପାଖରେ ପିଲା । ଦୁନିଆଁର ଭଲମନ୍ଦ ସୁଖଦୁଃଖ ପରଖିପରଖି ମୁଣ୍ଡବାଳ ଧଳା ହେଲାଣି । ସେ କଥା ତମେ କ'ଣ ବୁଝିବ ? ତମେ ଖାଲି ଉଜାଣି ସୁଅରେ ଭାସି ଜାଣିଛ, ପହଁରି ଜାଣିନା । ତମେ ମଣିଷ ଦେଖୁଛ ହେଲେ ମଣିଷକୁ ଚିହ୍ନିନା ।

ବିଜୟ ବାପା !

ହରିଶ ହଉ ବିଜୁ ! ବୁଝି ବିଚାରି ଯାହା କରିବୁ । ନେଡ଼ି ଗୁଡ଼ କହୁଣୀକୁ ବୋହିଗଲେ ଆଉ କିଛି କରିପାରିବୁନି । ଅନେକ ରାତି ହେଲାଣି ଶୋଇବ ଯାଅ ।

(ହରିଶ ଚାଲିଗଲା ପରେ)

Digitized by srujanika@gmail.com

ବିଜୟ — ବାପାଙ୍କ ମୁହେଁମୁହେଁ ଏମିତି କହି ତୁମେ ଠିକ୍ କଲନି କମଳା । ଯାହା ହେଲେ ବି ସେ ଆମର ହିତାକାଂକ୍ଷୀ । ଆମଠାରୁ ବେଶି ସେ ଜୀବନକୁ ଜାଣିଛନ୍ତି ,ଦୁନିଆଁକୁ ଚିହ୍ନିଛନ୍ତି ।

କମଳା — କ'ଣ ମୁଁ ଏମିତି ଭୁଲଟା କହିଦେଲି ଯେ....ଗାଁ'ର ସେ ଯୋଉ କାଦୁଅ ପଚପଚ ଦାଣ୍ଡ... ହାତେ ଓଢ଼ଣା ତଳେ ମୁହଁ ଲୁଚେଇଥିବା ହଳଦିବୋଳା ମୁହଁ କଥା ମନେ ପଡ଼ିଲେ ନା ଦେହଟା ଶୀତେଇ ଉଠୁଛି । ଆଉ ସେ ଯୋଉ ଦଳଗଡ଼ିଆର ପଚା ପାଣି ଥରେ ଗାଧୋଇ ପଡ଼ିଲେ ନିମୋନିଆଁ ଧରିଯିବ , ସେଠି କ'ଣ ମଣିଷ ମଣିଷ ଭଳି ରହିପାରେ ... ।

ବିଜୟ — ଆଉ କ'ଣ ସହରରେ ଖାଲି ମଣିଷ ଅଛନ୍ତି ? ବୁଝିଲ କମଳା, ତମ ବାପଘର ବି ନିପଟ ମଫସଲରେ । ତମେ ବି ସେଇ କାଦୁଅ ଘେରା ଗାଁ ଦାଣ୍ଡରେ ଧୂଳିଖେଳିଛ...ବଡ଼ ହେଇଛ । ଆଉ ଆଜି ମୋ ଚାକିରିଟା ଅଛି ବୋଲି ସହରରେ କିଛି ବର୍ଷ ରହିଯାଇ ତମେ ନିଜକୁ ଭାରି advance ମନେକରୁଛ । ମୋ ଚାକିରୀଟା ନ ଥିଲେ...ତମେତ ପୁଣି ଗାଁ ରେ ରହି ବୋହୂପଣିଆ କରିଥାନ୍ତ ।

କମଳା — ସବୁବେଳେ ତମେ ବାପଘର ଖୁଣ୍ଟାଦିଅ କାହିଁକି କହିଲ ? ମତେ ସହରକୁ ଆଣିବାକୁ କିଏ କହୁଥିଲା ?

ବିଜୟ — ଆହା ରାଗନି କମଳା । ତମେ ନିଜେ ଚିନ୍ତା କରି ଦେଖିଲ । କେଡ଼େ କଷ୍ଟରେ ଆମେ ଚଳୁଛେ । ଦିନେ ମାନସିକ ଶାନ୍ତି ପାଇଛେ କି ? ସବୁବେଳେ ଧାରକରଜ ଲାଗି ରହିଛି । ଏତେବର୍ଷର ଚାକିରି ଭିତରେ ଆମେ ନିଜ ପାଇଁ କ'ଣ କରିପାରିଛେ ? କ'ଣ ରଖି ପାରିଛେ ?

କମଳା — କ'ଣ କହିଲ । କିଛି କରିପାରିନେ । ପିଲା ଦି'ଟା ମଣିଷ ହେଲେ କେମିତି ମ ! ମୁନା ଯଦି ଗାଁରେ ଥାନ୍ତା ତେବେ କ'ଣ ଏତେ ଭଲ ପଢ଼ି ପାରିଥାନ୍ତା ।

Digitized by srujanika@gmail.com

ଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋଋ

ବିଜୟ : ତମ ମନର ଭୁଲ୍ ଧାରଣା କେବେ ଭାଙ୍ଗିବ କେଜାଣି- ଗାଁ ପିଲା କ'ଣ ଡାକ୍ତର ଇଂଜିନିୟର ହଉନାହାନ୍ତି ? ବଡ଼ ମଣିଷ ହଉନାହାନ୍ତି ? ଇତିହାସ, ସାହିତ୍ୟ ପଢ଼ିଲେ ତମେ ଜାଣ ତ କମଳା, ପୃଥିବୀର ବଡ଼ ମଣିଷ, ବିଶିଷ୍ଟ ସାହିତ୍ୟିକମାନଙ୍କର ପ୍ରକୃତ କର୍ମକ୍ଷେତ୍ର ହିଁ ଗାଆଁ ମାଟି । ତା'ର ମୁକ୍ତ ଆକାଶ...ଖୋଲାପବନ...ଶାନ୍ତ ସ୍ନିଗ୍ଧ ରୂପ ମନରେ କେତେ ଶାନ୍ତି ଭରିଦିଏ । କେତେ ତୃପ୍ତି ଦିଏ ସେ କଥା ତମେ ବୁଝି ପାରିବନି କମଳା... ।

କମଳା ରଖମ ତମର ସେ ସାହିତ୍ୟ, ଇତିହାସ । ଏତେ ଯଦି ଘର ପ୍ରତି ମମତା, ତେବେ ତମେ ନିଜେ ଗାଁକୁ ଚାଲିଯାଉନ । ମୁଁ କିନ୍ତୁ ଗାଁକୁ ଯିବିନି ।

ବିଜୟ ତମକୁ ମୁଁ ବାଧ କରୁନି କମଳା । ତମେ ଥରେ ବୁଝିବାକୁ ଚେଷ୍ଟା କର । ସହରର ଜୀବନ ଅନ୍ତଃସାର ଶୂନ୍ୟ । ଏ ସାଜସଜ୍ଜା, ଏ କୋଳାହଳ, ଏ ଚାକଚକ୍ୟ ସବୁ ଖାଲି ଫମ୍ପା , ତା'ଭିତରେ ଏକ ବିରାଟ ଶୂନ୍ୟତା ଭରିରହିଛି । ମଣିଷର ମନ ଓ ଶରୀରକୁ ବ୍ୟାଧିଗ୍ରସ୍ତ କରିଦେବାର ଜୀବାଣୁ ଭରିରହିଛି । କମଳା, ଶିକ୍ଷାର ଲକ୍ଷ୍ୟ କେବଳ ସହରୀ ଜୀବନ ନୁହେଁ କି ଚାକଚକ୍ୟ ନୁହେଁ । ନିଜେ ବଞ୍ଚି ଅନ୍ୟକୁ ବଞ୍ଚାଇ ରଖିବା ଶିକ୍ଷାର ପ୍ରକୃତ ଲକ୍ଷ୍ୟ ।

କମଳା ଥାଉ । ସେତିକି ଥାଉ । ତମର ସେ ବଡ଼ ବଡ଼ କଥା ଆଉ କାହାକୁ କହିବ । ମୋ କଥା ମୁଁ କହି ସାରିଛି । (ହାଇମାରି) ଅନେକ ରାତି ହେଲାଣି । ତମ କଥା ଶୁଣି ଶୁଣି ମୁଣ୍ଡଟା ବି ଭୀଷଣ ବିନ୍ଧିଲାଣି । ଲାଇଟ୍ ଲିଭାଇଲ । ଓ ହୋ .....

(ଅନ୍ଧାର )

Digitized by srujanika@gmail.com

| | |
|---|---|
| ମୁନା | ଓହୋ ବୋଉ ! କିଛି ଅସୁବିଧା ହେଇନି, ରାଧୁ ସାଙ୍ଗରେ ଗପି ଗପି ବାଟଚଲା ବି ବାଧିଲାନି । ବହୁତ ଦିନପରେ ଗାଁକୁ ଆସିଲି ତ ! ଗାଁ'ର ଗୋହରୀ ଦାଣ୍ଡରେ ଚାଲିବାକୁ ଭାରି ଭଲଲାଗିଲା । ଗାଁ' ଚାରିପାଖର ବଣବୁଦା, ବିଲ, ପୋଖରୀ ଆଃ କି ସୁନ୍ଦର । Really fantastic. |
| କମଳା | ତୁ ଚାଲିଲୁ । ମୁହଁହାତ ଧୋଇ ଖାଇବୁ । କ'ଣ କେତେବେଳେ ଖାଇଥିବୁ । |
| ବିଜୟ | ରୁହ କମଳା । ପିଲାଟା ଟିକେ rest ନେଉ । |
| ରାଧୁ | ମୁଁ ଟିକେ ଆସୁଛି ବାବୁ । ଏଇ ଗଲି ଆଉ ଏଇ ଆଇଲି । (ଚାଲିଯାଇଛି) |
| କମଳା | ପରୀକ୍ଷାରେ ଭଲ ହେଇଛି ତ ? |
| ମୁନ୍ନା | ବ୍ୟସ୍ତ ହନା ବୋଉ । First class ନିଶ୍ଚିତ । |
| ବିଜୟ | Result ବାହାରିବା ପରେ କ'ଣ କରିବୁ ବୋଲି ସ୍ଥିର କରିଛୁ |
| କମଳା | କେମିତିକା କଥା ତମେ ପଚାର କେଜାଣି । କ'ଣ ଆଉ କରିବ Agriculture ରେ ଡିଗ୍ରୀଟା ପାଇଛି । ପରେ ବଡ଼ ଚାକିରିଟା ନିଶ୍ଚୟ ପାଇବ । |
| ମୁନ୍ନା | ନା ବୋଉ ! ମୁଁ ଚାକିରି କରିବିନି । |
| ବିଜୟ | କ'ଣ କରିବୁ ବୋଲି ତୁ ସ୍ଥିର କରିଛୁ । |
| ମୁନ୍ନା | ବାପା ! ଚାକିରି ପ୍ରତି ମୋର ଲୋଭ ନାହିଁ । କୃଷିରେ ଏତେ ବଡ଼ ଯୋଉ ଡିଗ୍ରୀଟା ପାଇବି, ତା'ର ଉପଯୋଗ କେବଳ ଚାକିରିରେ ନୁହେଁ । କୃଷି ବିଷୟରେ ଯେଉଁ ଉଚ୍ଚଶିକ୍ଷା ମୁଁ ପାଇଛି ସହରରେ ଚାକିରି କରି ତା'ର ସଦୁପଯୋଗ କରିହେବନି ବରଂ ପାଠପଢ଼ାର ମୂଲ୍ୟ କମିଯିବ । |
| କମଳା | ତୁ ତେବେ କ'ଣ କରିବୁ ଶୁଣେ ? |
| ମୁନା | କାହିଁକି ବୋଉ ? ଆମର ଯେତିକି ଜମି ଅଛି ତାକୁ ହିଁ ଚାଷ କରିବି । ଆରାମରେ ରହିବି । କାହାରି ବାଧା ନାହିଁ କି ବନ୍ଧନ ନାହିଁ । |

Digitized by srujanika@gmail.com

ବିଜୟ : ହେଲେ ଏ ଚାଷ ପାଇଁ କେତେ ପଇସା ଦରକାର ଜାଣିଛୁ ତ । ତୁ ତ ଜାଣୁ କରଜ ଶୁଝିବାକୁ ମତେ ଆହୁରି କେତେ ବର୍ଷ ଲାଗିଯିବ ।

ମୁନା ତମେ ମୋଟେ ଚିନ୍ତା କରନି ବାପା ! ତମକୁ ମୁଁ ଟଙ୍କା ମାଗିବିନି ।

କମଳା ତେବେ କ'ଣ କରିବୁ ଶୁଣେ ?

ମୁନା କାହିଁକି ? ସରକାର ତ ଏବେ କୃଷି, Small industry, ପଶୁପାଳନ ପାଇଁ ଅନେକ ଋଣ ଦଉଛନ୍ତି ସେଥିରେ ସବ୍‌ସିଡ଼ ମଧ୍ୟ ଅଛି । ମୁଁ ଗ୍ରାମ୍ୟବ୍ୟାଙ୍କରୁ ଟଙ୍କା loan ଆଣି ଚାଷ କରିବି । ଗୋଟିଏ ପମ୍ପସେଟ୍ କିଣିବି । ପାଣିର ଅସୁବିଧା ମଧ୍ୟ ରହିବନି । ତା'ଛଡ଼ା ୪/୫ଟା ଗାଈ ପାଳିଲେ ସେଥିରୁ ତ ଆମେ ଯଥେଷ୍ଟ ଲାଭ ପାଇବା । ଚାକିରି ତୁଳନାରେ ଏଥିରୁ ବହୁତ ଲାଭ ମିଳିବ ।

ବିଜୟ ତୁ ଠିକ୍ କହିଛୁରେ ମୁନା, ତୋ ଶିକ୍ଷାର ପ୍ରକୃତ ଉପଯୋଗ ତୁ କରିପାରିବୁ । ଆମ ଭଳି ଭବିଷ୍ୟତ ପାଇଁ ତୋର ଭୟ ନଥିବ ।

ମୁନା ଖାଲି ମୋର ନୁହେଁ ବାପା ! ମୁଁ ଠିକ୍ କରିଛି ଗାଁ' ଲୋକମାନଙ୍କୁ ମଧ୍ୟ ଏକଜୁଟ୍ କରି ବିହନ, ସାର, ଉନ୍ନତ ଚାଷ ପ୍ରଣାଳୀ ବିଷୟରେ ବୁଝାଇବି । ଦେଖିବ ବାପା । ଏ ଗାଁ' ମାଟି କେମିତି ହସିଉଠିବ ।

କମଳା ତୋ ତୁଣ୍ଡ ସୁତୁଣ୍ଡ ହଉରେ ମୁନା ।

(ରାଧୁ ଆସିଛି । ହାତରେ ଧରିଛି ଦହି ଓ ଛେନା)

ବିଜୟ ଆରେ ଇୟେ କ'ଣ ରାଧୁ !

ରାଧୁ ଘରେ ଗାଈ ଦୁହାଁଳ ଅଛି ତ । ମୁନାବାବୁ ଆସିବା ଶୁଣି ନକ୍ଷିବୋଉ ବସାଦହି ଆଉ ଛେନା ପଠାଇଦେଲା । ମୁନାବାବୁଙ୍କର ଏସବୁ ଅତି ପ୍ରିୟ ଜିନିଷ ପରା ।

ମୁନା ଓହୋ ରାଧୁ କକା ! You are great ! ବୋଉ ଭାରି ଭୋକ ।

କମଳା ତତେ ମୁଁ ସେତେବେଳୁ ଡାକୁଛି ଖାଇବୁ ଚାଲ, ବାପପୁଅଙ୍କର କଥା ସିନା ସରିଲେ ।

ମୁନା କିନ୍ତୁ ବୋଉ ! ଆଜି ତୋର ସେ ଛ'ତିଅଣ ନ'ଭଜା ମୁଁ ଖାଇବିନି । କ'ଣ ଖାଇବି ଜାଣିଛୁ ?

Digitized by srujanika@gmail.com

## ॥ ୪ର୍ଥ ଦୃଶ୍ୟ ॥
## (ଗାଁ'ର Effect)

ବିଜୟ — ଆପଣା ହସ୍ତେ ଜିହ୍ୱା ଛେଦି, କେ ତା'ର ଅଛି ପ୍ରତିବାଦୀ, ଜାଣି ଜାଣି ନିଜ ଅବହେଳାରୁ ମୁଁ ବାପାଙ୍କ ସାଇତା ସମ୍ପତ୍ତିକୁ ଉଜାଡ଼ି ଦେଇଛି । ଆଜି ଦୁଃଖ କରି କ'ଣ ଅଛି ରାଧୁ ?

ରାଧୁ — ବଡବାବୁ ! ତେମେ ଆପଣେ ମୋଟେ ଚିନ୍ତା କରନି ମ ! ଠାକୁରେ ଚାହିଁଲେ ପୁଣି ଏ ଘର ହସି ଉଠିବ । କିଛି ଅଭାବ ରହିବନି ।

ବିଜୟ — ନାଇଁରେ ରାଧୁ । ମୋ ଦୁଃଖ ତୁ ବୁଝି ପାରିବୁନିରେ । ସମସ୍ତେ ଭାବୁଥିବେ ଚାକିରି କରିଥିଲି ପୁଣି ସହରରେ । ଅନେକ ଗଚ୍ଛିତ ଟଙ୍କା ଅଛି । କିନ୍ତୁ କିଏ ବୁଝିବ ଯେ ମୋର ଦୁଇହାତ ଶୂନ୍ୟ । ଆଜିଯାଏ କରଜ ସୁଝା ସରିନି ।

ରାଧୁ — କହିଲି ପରା ସବୁ ଠିକ୍ ହେଇଯିବ ।

ବିଜୟ — ବିଲବାଡ଼ିର ଯାହା ଅବସ୍ଥା । ଧନ ଥିଲେ ସିନା ସବୁ କରି ପକାନ୍ତି । ଯା ହେଉ ମୁଣ୍ଡ ଗୁଞ୍ଜିବାକୁ ଘର ଖଣ୍ଡେ ଥିଲା ବୋଲି, ନ ହେଲେ ଆଜି କି ହିନସ୍ଥା ହଉଥାନ୍ତି କହିଲୁ । ୫୦୦ଟଙ୍କା ପେନ୍‌ସନ୍‌ରେ କ'ଣ ଚଳି ହଉଥାନ୍ତା ।

କମଳା — ସତରେ ମୁଁ କେଡ଼େ ନିର୍ବୋଧ । ତମକୁ ଭୁଲ୍ ବୁଝି ନିଜ ସଂସାରକୁ ସଜାଡ଼ି ପାରିଲିନି । ମୁନା ଆମର ଏକମାତ୍ର ଭରସା ।

ରାଧୁ — ମାଆ ! ତମେ ବି ବାବୁଙ୍କ ଭଳି ବାଇଆ ହେଲ ? ଆମେ ଥାଉ ଥାଉ ତମେ ହଇରାଣ ହେବ ? କେବେ ନୁହେଁ, ଦେଖିବ ଗୁହ ମାଆ, ଏଇ ଦିନେ ଦୁଇଦିନ ଭିତରେ ତମ ଜମି ଯଦି ହଳ ନ ହେଇଛି, ମୋ ନାଁ ରାଧୁ ସାମଲ ନୁହେଁ । ଏଠି ସମସ୍ତେ ପରା ଆମେ ଭାଇ ଭାଇ । ନ ହେଲା ଏବେ ଆମେ ତମକୁ କ୍ଷୀରି ପୁରି ଦେଇ ପାରିବୁନି । ଶାଗ ପେଜ ତ ଦେଇ ପାରିବୁ । ବଳ ଖଟେଇ ତମ କାମ ତ କରିପାରିବୁ । ଗାଁ' ଲୋକଙ୍କୁ ତମେ ଚିହ୍ନିନା ମା' ।

Digitized by srujanika@gmail.com

ଏମାନଙ୍କର ସିନା ଧନ ନାହିଁ, ମନ ଅଛି । କଥାରେ ନାହିଁ ମଇଁଷିଶିଙ୍ଗ ଫଟା –ଯୁଝିଲା ବେଳକୁ ଗୋଟା ।

କମଳା — ରାଧୁ ! ତମକୁ ମୁଁ କ'ଣ କହିବି ଭାବିପାରୁନି ।

ରାଧୁ — ଥାଉ ମାଆ ! ତମରି ଘର ଲୁଣ ଖାଇ ମୁଁ ବୁଢ଼ା ହେଲିଣି । ମୋ ପୁଅ ନାତି ବି ତମରି କାମ କରିବେ । ଖାଲି ତମର ସିନିହଁ ଶରଧା ଟିକେ ଥିଲେ ହେଲା ।

ବିଜୟ — ଆରେ, ଆଜି ପରା ମୁନା ଆସିବ । କ'ଣ କିଛି ରୋଷେଇବାସର ଯୋଗାଡ଼ କଲଣି ନା ନାହିଁ ?

କମଳା — ଯାଉଛି, ଆରେ ହଁ ଆଜି ଶ୍ୟାମ ପଧାନେ ତାଙ୍କ ବାରି ପରିବାରୁ କିଛି, ଆଉ ଭଲ ସରୁ ଚାଉଳ, ମୁଗ ଦି'ଗୌଣି ଦେଇ ଯାଇଛନ୍ତି- ଯେତେ ମନା କଲି ଶୁଣିଲେନି, କହିଲେ କ'ଣ ନା ବାପାଙ୍କ ଅମଳରୁ ଯୋଉ ସମ୍ବନ୍ଧଟା ଥିଲା, ସେଇଟା ସେ ଭୁଲିବେ କେମିତି ?

ବିଜୟ — ଦେଖିଲ ତ କମଳା ! ଏତେ ଭଲ ବ୍ୟବହାର, ଏତେ ପ୍ରାଣଖୋଲା ସ୍ନେହ ତମେ କେଉଁଠୁ ପାଇଛ ? ଆଉ ତଟକା ପନିପରିବାର ସ୍ୱାଦ କ'ଣ ସହରରେ ବାସି ମାଲରେ ଥାଏ କମଳା –

କମଳା — ହଉ ହଉ ତମେ ଯାଅ, ଗାଧୋଇ ଆସିବ । ରାଧୁ ତୁ ଗଲୁ ଦେଖିବୁ ମୁନାବାବୁ ଆସିଲେ କି ନାହିଁ । ପିଲାଲୋକ ଜିନିଷପତ୍ର ଧରି ଆସିବାକୁ କଷ୍ଟ ଲାଗିବ ।

ରାଧୁ — ମୁନାବାବୁ କାହିଁକି କଷ୍ଟ କରିବେ ମ ! ରାଧୁ ଥାଉ ଥାଉ ତାଙ୍କର କି କଷ୍ଟ । ହଉ ମାଆ ମୁଁ ଚାଲିଲି –

(ମୁନା ଓ ରାଧୁ ଆସିଛନ୍ତି । ରାଧୁ ମୁଣ୍ଡରୁ ଟ୍ରଙ୍କ୍‌ଟା ଓହ୍ଲାଇ ରଖିଛି ଓ ଡାକିଛି )

ରାଧୁ — ମାଆ ! ବଡ଼ବାବୁ ! ଦେଖ ମୁନାବାବୁ ଆସିଗଲେ ।

ବିଜୟ — ଭଲରେ ଭଲରେ ଆସିଲୁ ତ ?

କମଳା — ବାଟରେ କିଛି ଅସୁବିଧା ହେଇନି ତ ?

Digitized by srujanika@gmail.com

କମଳା	କ'ଣ ଖାଇବୁ କହ ?

ମୁନା	ପଖାଳ ସାଙ୍ଗକୁ ବସାଦହି । ଗରମ ଗରମ ଶାଗଭଜା ଆଉ ବଡ଼ି ଚଟଣି ।

ରାଧୁ	ଯାଅ ମାଆ ! ପେଟ ପୂରେଇ ମୁନାବାବୁଙ୍କ ଦି'ଟା ଖାଇବାକୁ ଦିଅ । ଦେଖିବ ମୁନାବାବୁ ! ଏ ଶାଗ ପଖାଳର ଯୋଉ ଗୁଣ, ତମ ପରଟା, ଆଳୁ ଚପ୍‌ରେ ନାହିଁ ମ !

(ମୁନା ଓ କମଳା ଚାଲି ଯାଇଛନ୍ତି)

ବିଜୟ	ଆରେ ଶୁଣିଲୁଣି ରାଧୁ ! ମୁନା କ'ଣ କହୁଛି ।

ରାଧୁ	କ'ଣ ବଡ଼ବାବୁ !

ବିଜୟ	ମୁନା କହୁଛି ଚାକିରି କରିବନି । ଏଇଠି ଏଇ ଗାଁ'ରେ ରହିବ । ଚାଷ କରିବ ।

ରାଧୁ	ସତେନା କ'ଣ ?

ବିଜୟ	ହଁ ରାଧୁ । କୃଷି ବିଦ୍ୟାଳୟକୁ ଯାହା ପଢ଼ିଛି, ଯାହା ଶିଖିଛି ସବୁ ଏଇଠି କାମରେ କରି ଦେଖେଇବ । ମୁନା ମୋର ଭାରି ବୁଦ୍ଧିଆ । ବାପାଙ୍କ ଆଶା ପୁଅ ହେଉ ମୁଁ ସିନା ପୂରଣ କରିପାରିଲିନି । ମୁନା ଏକା ପାରିବ ।

ରାଧୁ	ଠାକୁରେ ତାକୁ କୋଟି ପରମାୟୁ ଦେଇଥାନ୍ତୁ । ହେଲେ ବାବୁ ମୋ ଅମରଟା ମଣିଷ ହେଲାନି ।

ବିଜୟ	କିରେ କ'ଣ ହେଲା ?

ରାଧୁ	ମାଟ୍ରିକ୍ ଖଣ୍ଡକ ପାଶ୍ କଲା । ଆଉ ପଢ଼େଇବାକୁ ସମ୍ବଳ କାହିଁ । ସେତିକିରେ ସେ ଆଉ ହଲିଲା ପାଣିକି ଗୋଡ଼ ବଢ଼ଉନି । କାଦୁଅ ଦେଖିଲେ ନାକ ଟେକୁଛ- ଖାଲି ମାସକୁ ମାସ ପଇସା ନେଇ ସହରକୁ ଦୌଡ଼ୁଛି ।

ବିଜୟ	କିରେ କାହିଁକି ?

ରାଧୁ	କହୁଛି କ'ଣ ନା ଚାକିରି କରିବ । ବାବୁ ହେବ । ପାଠପଢ଼ି ବିଲରେ ଖଟିବାକୁ ତାକୁ ଲାଜ ଲାଗୁଛି । ତେମେ କହିଲ ବାବୁ । ମୁନାବାବୁ

Digitized by srujanika@gmail.com

ଠାରୁ କ'ଣ ସେ ବେଶୀ ପାଠୁଆ ? ଚାକିରୀରୁ କ'ଣ ମିଳିବ ? ଏଇ ହିଡ଼ ମାଟି ହିଡ଼ରେ ନଦି ଆମ ଚଉଦପୁରୁଷ ବିତିଲାଣି । ଏଇଟା ବାଲୁଙ୍ଗା ହେଇଗଲା । ଖାଲି ସିନିମା ଦେଖା । ଚାକିରି ଚାକିରି ବୋଲି ପାଗଳ ହଉଛି ।

ବିଜୟ   ଅମର ଭୁଲ ବାଟରେ ଯାଉଛି ରାଧୁ । ତାକୁ ମୋ ପାଖକୁ ପଠେଇଦେବୁ । ମୁଁ ତାକୁ ବୁଝେଇଦେବି ।

ରାଧୁ   ସେଇଆ କରିବି ବାବୁ । ତେମେ ସତ କହିଲ ବାବୁ, ଯୋଉଠି ଜନ୍ମ ହେଇଛେ, ତାକୁ ନିନ୍ଦିବା କ'ଣ ଠିକ୍ ? ଗାଁ'ରେ କ'ଣ ସୁଖ ନାହିଁ- ଆନନ୍ଦ ନାହିଁ- ଖାଲି ସହରରେ ଅଛି ?

ବିଜୟ   ନାଇଁରେ ରାଧୁ । ମୁଁ ପରା ଅଙ୍ଗେ ଲିଭେଇଛି । ସହରରେ ସମସ୍ତେ ଖାଲି ଗୋଟାଏ ମରୀଚିକା ପଛରେ ଅଣନିଶ୍ୱାସୀ ହେଇ ଧାଇଁଛନ୍ତି ସିନା । ହେଲେ ସେଥିରେ କ'ଣ ଶୋଷ ମରୁଛି । ଖାଲି ହତାଶ ବଢ଼ିଚାଲିଛି ।

ରାଧୁ   ବାବୁ! ପାଠପଢ଼ି ଚାଷ କରିବା କ'ଣ ଲାଜର କଥା ?

ବିଜୟ   ନାଁ ରାଧୁ । ପାଠପଢ଼ାର ଲକ୍ଷ୍ୟ କେବଳ ଚାକିରି ନୁହେଁ । ନିଜ ମନକୁ ବିକଶିତ କରିବା, ବଡ଼ କରିବା ଶିକ୍ଷାର ଉଦ୍ଦେଶ୍ୟ । ତା'ଛଡ଼ା ଗାଁ' ମାଟି କୃଷକର ସ୍ୱର୍ଗ । ତା'ରି ହାତର ଉପୁଜା ଫସଲ ସାରା ଦେଶକୁ ଜୀବନ ଦେଉଛି । ବଞ୍ଚିବାକୁ ଖୋରାକ୍ ଦେଉଛି । ଆମେ ସମସ୍ତେ ଯଦି ଗାଁ' ମାଟିକୁ ଘୃଣା କରିବ, ତେବେ ଖାଇବା କ'ଣ ? ରହିବା କୋଉଠି ?

ରାଧୁ   ସତ କହିଲ ବାବୁ । ଏକଥା ଯଦି ଆମ ପାଠୁଆ ପିଲାଏ ବୁଝନ୍ତେ ତା'ହେଲେ ଗାଁ'ର ଦୁଃଖ ଯା'ନ୍ତା ।

ବିଜୟ   ଖାଲି ଗାଁ'ର କାହିଁକି ? ସାରା ଦେଶର ଦୁଃଖ ଦୂର ହୁଅନ୍ତା । ହେଲେ ଏକଥା ବୁଝୁଚି କିଏ ? ସମସ୍ତେ ଚାକିରି ପଛରେ ଧାଇଁ ଜନ୍ମମାଟିକୁ ଦୂରେଇ ଦେଉଛନ୍ତି । ଆଉ ସହରରେ ନିଃଶ୍ୱାସ ନବାପାଇଁ ବି ଜାଗାଟିଏ ରହୁନି । ଏମିତି ସମୟ ଆସିବ ରାଧୁ- ଯେତେବେଳେ

Digitized by srujanika@gmail.com

ସହରରେ ପାଦଟିଏ ରଖିବାକୁ ବି ଜାଗା ନଥିବ ।

ରାଧୁ — ଯାହା କହିଲ ସତ ବାବୁ । ଆମେ ସିନା ମୂରୁଖ– ଅପାଠୁଆ । ଗାଁ'ର ଏ ପାଣିପବନ ଫଳଫୁଲ ସହରରେ କାହିଁମ ବାବୁ– ତୁଛା ଖାଲି ଚକ ଚକ । ଆଇମା' କାହାଣୀ ମୁଣିର କୁହୁକ ରାଇଜ ଭଳି ଏଇ ଅଛି... ଏଇ ନାହିଁ । ତେମେ ଟିକେ ଅମରକୁ ବାଟକୁ ଆଣ ବାବୁ । ନହେଲେ ସେ ଅମଣିଷ ହେଇଯିବ ।

ବିଜୟ — ତୁ ବ୍ୟସ୍ତ ହନା । ମୁଁ ତାକୁ ବାଟକୁ ନେଇଆସିବି । ଦେଖୁନୁ– ବାପାଙ୍କ କଥା ନଶୁଣି ମୁଁ କେତେ ଅନୁତାପ କରୁଛି । ଆମ ପିଲାଙ୍କୁ ଆମେ ସେ ଭୁଲ୍ କରିବାକୁ ଦବା କାହିଁକି । ହିଡ଼ ମାଟି ହିଡ଼ରେ ଲଦିବାଟା ଗୋଟାଏ ପବିତ୍ର କାମ ।

ରାଧୁ — ବାବୁ ! ପିଲାଏ ପରା ଇସ୍କୁଲ୍‌ରେ ବୋଲୁଛନ୍ତି– ଚାଷ କାମ ଯାହାର କି ଆନନ୍ଦ ତାହାର, ସେଇ ସିନା ଦୁନିଆକୁ ଯୋଗାଉଛି ଆହାର ।

ବିଜ — ଏ ଗୀତ କେବଳ ଗୀତ ନୁହେଁରେ ରାଧୁ–ଯାକୁ ପିଲାଏ ବୋଲୁଛନ୍ତି ସତ- କିନ୍ତୁ ବୁଝିବାରେ ଭୁଲ୍ ରହିଯାଉଛି, ଯଦି ପ୍ରତ୍ୟେକ ପିଲା ଏ ଗୀତକୁ ଠିକ୍ ଭାବରେ ବୁଝିପାରନ୍ତେ ଏବଂ ବଡ଼ ହୋଇ ଅନ୍ୟକୁ ବୁଝାଇପାରନ୍ତେ, ତା'ହେଲେ ଗାଁ ମାଟି ଆଜି ହସିଉଠୁଥାନ୍ତା । ଗାଁ' ଯଦି ନ ହସିବ- ସହର ହସିବନି କି ସାରା ଦେଶ ବି ହସିବନି, ଏ କଥା ଯଦି ପ୍ରତ୍ୟେକ ଲୋକ ଚିନ୍ତା କରୁଥାନ୍ତେ ତା'ହେଲେ ଆଜି ମୋ ଭଳି ଅନୁଶୋଚନା କରିବାକୁ ପଡୁନଥାନ୍ତା ।



(ଆକାଶବାଣୀ, କଟକ କେନ୍ଦ୍ରରୁ ପ୍ରସାରିତ)

Digitized by srujanika@gmail.com




| | |
|---|---|
| ବିକାଶ | (କବି) ବୟସ ୩୨/୩୩ ବର୍ଷ |
| ସୁବ୍ରତ | (ଇଂଜିନିୟର୍) ବୟସ- ୩୨/୩୩ |
| ସୁକାନ୍ତ | (ପୋ : ଇଂ :) ବୟସ- ୩୨/୩୩ |
| ଦେବାଶିଷ | (ଲେକଚର) ବୟସ- ୩୨/୩୩ |
| ଭଦ୍ରବ୍ୟକ୍ତି ଓ ପ୍ରଦୀପ | ବୟସ ୩୨/୩୩ |
| ଅରୁନ୍ଧତୀ | ବୟସ ୨୪/୨୫ |
| ଚୌକିଦାର | (ବୁଢ଼ା) ବୟସ- ୫୪/୫୫ |
| (ରଜତ୍) ୧ମ ଯୁବକ | ବୟସ ୨୬/୨୭ |
| (ଅଭିଜିତ୍) ୨ୟ ଯୁବକ: | ବୟସ ୨୬/୨୭ |
| ୩ୟ ଯୁବକ | ବୟସ ୨୬/୨୭ |
| ୪ର୍ଥ ଯୁବକ | ବୟସ ୨୬/୨୭ |

Digitized by srujanika@gmail.com

## ॥ ପ୍ରଥମ ଦୃଶ୍ୟ ॥

(ବର୍ଷାଦିନର ସକାଳ । ଦେବାଶିଷଙ୍କ ଘରେ ଆସର ଜମେଇଥାନ୍ତି ସୁକାନ୍ତ, ଗାଳ୍ପିକ ବିକାଶ, ଇଂ ସୁବ୍ରତ । ରେଡ଼ିଓରୁ ମଧୁର ଗୀତ ଶୁଭୁଥାଏ । ତିନିବନ୍ଧୁଙ୍କର ହସଖୁସି ସହିତ ଚା' ପିଆଲାର ଟୁଂ ଟାଂ ଶବ୍ଦ ଶୁଭୁଥାଏ ।)

ବିକାଶ (ଗୁଣୁଗୁଣୁ ହୋଇ ଗୀତ ଗାଉଥାଏ) ଅବୁଝା ଶ୍ରାବଣୀ.. ମୋ ମନ ବୁଝେନି ବୁଝେନି... । ଲା... ଲା ଲା...

ସୁବ୍ରତ (ବାଧାଦେଇ) Really ବିକାଶ ! ତୁ ସତରେ ଏକା ଏକା ଆଜିର ଏ ବର୍ଷଣମୁଖର, ଶ୍ରାବଣ ସକାଳଟାକୁ ମନଭରି ଉପଭୋଗ କରିପାରୁଛୁ । ହଁ ଭାଇ, ତୋର କୋଉ ଘରସଂସାର ଚିନ୍ତା ଅଛି ଯେ... । ମୁକ୍ତ ଆକାଶର ବିହଙ୍ଗ ଭଳି ତୁ ମନଇଚ୍ଛା ଯୁଆଡ଼େ ଯାଇପାରୁଛୁ- ଆସିପାରୁଛୁ, ହେଲେ ଆମେ... । (ଦୀର୍ଘଶ୍ୱାସ ନେଇ)

ଦେବାଶିଷ: କିରେ ସୁବ୍ରତ ! ତୋର କ'ଣ ବିକାଶ ଉପରେ ଈର୍ଷା ହଉଛି କି ? (ଥଟ୍ଟାରେ) ଆରେ, ସିଏ ସିନା ଚାରିଦଣ୍ଡଉଡ଼ି କଟା ହେଇ ବୁଲୁଛି, ହେଲେ ମନେ ମନେ କେମିତି ଛଟପଟ ହଉଛି, ସେ କଥା ତୁ କ'ଣ ବୁଝିପାରୁନୁ ? କୋଉ ଅବୁଝା ଝିଅ, ତା' ମନକଥା କେମିତି ବୁଝିପାରୁନି କେଜାଣି ? ବିଚରା ! ତାକୁଇ ମନେପକେଇ, କେମିତି ଗାଉଛ 'ଅବୁଝା ଶ୍ରାବଣୀ... ।'

ବିକାଶ (କୃତ୍ରିମ କ୍ରୋଧରେ) ଏଇ ଦେବାଶିଷ ! ଏମିତି ଥଟ୍ଟା କରି, ମୋ mood ଟାକୁ off କରିଦେନା କହୁଛି । ଆରେ, ତମେ କୁଆଡୁ ବୁଝିବ- ବର୍ଷା- ବସନ୍ତ- ବୈଶାଖର ବୈଚିତ୍ରକୁ ?

Digitized by srujanika@gmail.com

ସୁବ୍ରତ (ଚିଡ଼େଇ) ହଁ, ଆମେ କ'ଣ ତୋ ଭଳି କବି ନା ଗାଳ୍ପିକ ହେଇଛୁ ଯେ, ଏ ସବୁ ବୁଝିପାରିବୁ! ଇଟା, ସିମେଣ୍ଟ, ବାଲି ସହିତ କାମ କରି କରି ମନଟା ବି ରସଶୂନ୍ୟ ହେଇଗଲାଣି। ବର୍ଷା-ବସନ୍ତର-ବୈଶାଖର ରସଘନ ମୁହୂର୍ତ୍ତକୁ ବୁଝିବାଭଳି ମନଟିଏ ଆମର କାହିଁ ?

ବିକାଶ ଛାଡ୍ ଭାଇ! ଆରେ ଏ କ'ଣ ? ଆମେ ସବୁ ଏତେ ବକର ବକର ହଉଛେ। ଆଉ ସୁକାନ୍ତ! କେମିତି ଚୁପ୍‌ଚାପ୍ ରହି ପୋଲିସର ଗାମ୍ଭୀର୍ଯ୍ୟ ରକ୍ଷା କରୁଛି ଦେଖ୍। ହଁ ଭାଇ, କଥାରେ ନାଇଁ, "ଚାକିରି କରିବ ପୋଲିସି, ମାଛ ଖାଇବ ଇଲିସି।"

ଦେବାଶିଷ: ଧେତ୍! ସୁକାନ୍ତ କ'ଣ ସେ ଭଳି ପିଲା। ତା'ର ନିଶ୍ଚୟ କ'ଣ ଗୋଟାଏ ହେଇଛି! ସୁକାନ୍ତ ଏ ସୁକାନ୍ତ!

ସୁକାନ୍ତ (ଚମକିଲା ପରି) ଏଁ! କ'ଣ କ'ଣ ହେଲା ?

ସୁବ୍ରତ ହଇରେ! ତୋର କ'ଣ ହେଇଛି ? ଏମିତି ଚୁପ୍‌ଚାପ୍ ବସିରହିଛୁ କାହିଁକି ? ଆବେ, ଆସରଟା ମୋଟେ ଜମୁନି :

ସୁକାନ୍ତ (ଗମ୍ଭୀର ହୋଇ) ମୁଁ ଯେ କି ଗୋଲକଧନ୍ଦାରେ ପଡ଼ିଯାଇଛି, ସେ କଥା ତମେମାନେ ବୁଝିପାରିବନି। ଇଚ୍ଛା ହେଉଛି, ଚାକିରିରୁ resign ଦେଇଦେବି। ଅନ୍ତତଃ ଟିକେ ଶାନ୍ତି ପାଇବିତ! Police ଚାକିରିରେ କେତେ risk ସେ କଥା କିଏ ବୁଝୁଛି ? କ'ଣ ନା, ପୋଲିସ୍ ଚାକିରି! ତମ ଭଳି ଇଂଜିନିୟର୍, ଡକ୍ଟର କି ଲେଖକଟାଏ ହେଇଥିଲେ...

ଦେବାଶିଷ: (କଥା ଛଡ଼େଇ) ଆମେ ବୁଝୁଛୁ ସୁକାନ୍ତ! ତୋ ଚାକିରିରେ risk... ତୋର ଦାୟିତ୍ୱ ସବୁ ଆମେ ବୁଝୁଛୁ ; ହେଲେ problem ଟା କ'ଣ, ଆମକୁ ଟିକେ କହ! ହୁଏତ ଆମଦ୍ୱାରା କିଛି ସମାଧାନ ହେଇପାରେ! ନା କ'ଣ ବିକାଶ ?

ବିକାଶ ହଁ, ହଁ। ଦେବାଶିଷ ଠିକ୍ କହୁଛି ସୁକାନ୍ତ। After all we are friends; କିଛି ନ କହି, ଏମିତି ମୁହଁ ଶୁଖାଇ ବସିଲେ, ଏ ରବିବାରଟା ପୂରାପୂରି ମାଟି ହୋଇଯିବନି ?

Digitized by srujanika@gmail.com

ଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେଢେ

ସୁକାନ୍ତ	କହୁଛି ବାବା କହୁଛି । ହଁ, ତମେ ତ ସବୁଦିନ paper ପଢୁଛ । ଏଇ ମାସେ ତଳେ, ସେଥିରେ ଗୋଟାଏ murder case ବିଷୟରେ ବାହାରିଥିଲା । ସେ କଥା ନିଶ୍ଚୟ ପଢ଼ିଥିବ ।

ସୁବ୍ରତ	(ମନେପକାଇ) ଆରେ ହଁ । ଗତମାସ ୧୫ ତାରିଖ paper ରେ ବାହାରିଥିଲା ତ ! ଆନନ୍ଦପୁର M.L.A ଙ୍କ ପୁଅ ଓ କଟକର ବିଖ୍ୟାତ ଧନୀ, ବ୍ୟବସାୟୀ ନବକିଶୋର ମହାପାତ୍ରଙ୍କ ପୁଅର ଆଶ୍ଚର୍ଯ୍ୟଜନକ ମୃତ୍ୟୁ ।

ଦେବାଶୀଷ:	ଆଉ ସେମାନଙ୍କ ହତ୍ୟା ରହସ୍ୟ ଉଦଘାଟନ କରିବାକୁ ପୋଲିସ୍ ଅସମର୍ଥ ! Am I right ? ଏଇଆ ତ ?

ସୁକାନ୍ତ	ହଁ ଭାଇ ! ସେଇ case ସମାଜର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ପୁତ୍ରକି ନା ! ସେଥିପାଇଁ ଚାରିଆଡୁ ଘନଘନ ତାଗିଦା ଆସୁଛି । ହେଲେ, ସେ ହତ୍ୟା, ସେମିତି ରହସ୍ୟ ହେଇ ରହିଯାଇଛି ।

ବିକାଶ	Interesting ହତ୍ୟାକାରୀର କିଛି ଚିହ୍ନ ବା ହତ୍ୟାର motive କ'ଣ ଧରାପଡୁନି ?

ସୁକାନ୍ତ	ସେମିତି ମିଳିଥିଲେ ତ, ଆମେ ହତ୍ୟାକାରୀକୁ ହାତକଡ଼ି ପକେଇ ସାରନ୍ତୁଣି ! କିନ୍ତୁ ନା ! ସବୁଠୁ ଆଶ୍ଚର୍ଯ୍ୟର କଥା ହଉଛି ଯେ, ହତ୍ୟାକାଣ୍ଡ କୌଣସି ଅସ୍ତ୍ରଶସ୍ତ୍ର ବା ବିଷପ୍ରୟୋଗ ଦ୍ୱାରା ହେଇନି ।

ସୁବ୍ରତ	ଆଉ !

ସୁକାନ୍ତ	ରାସ୍ତାକଡ଼ର ଏଇ ଜଙ୍ଗଲ ନିକଟରୁ- ଶବ ଦୁଇଟି ମିଳିଥିଲା । ମୁଁ ନିଜେ ମଧ୍ୟ Investigation କରିଥିଲି । ଶବ ଦୁଇଟିର ତଣ୍ଟିରେ- କେବଳ ଦୁଇଟି ଛୋଟ କଣା ବ୍ୟତୀତ- ଶରୀରର ଅନ୍ୟ କୌଣସି ସ୍ଥାନରେ ସାମାନ୍ୟ କ୍ଷତର ଚିହ୍ନବର୍ଣ୍ଣ ନଥିଲା । Post mortem report ରୁ ବାହାରିଥିଲା ଯେ, ଶରୀରରୁ ସବୁତକ ରକ୍ତ ନିଃଶେଷ ହୋଇଯାଇଥିବାରୁ ଅପମୃତ୍ୟୁ ଘଟିଛି । ଏହା ଏକ ଅପ୍ରାକୃତିକ ହତ୍ୟାକାଣ୍ଡ ।

Digitized by srujanika@gmail.com

| | |
|---|---|
| ଦେବାଶୀଷ: | Oh ! Really strange ! |
| ସୁକାନ୍ତ | ହତ୍ୟାକାରୀକୁ ବାହାର କରିବାକୁ ଉପରମହଲରୁ ବାରମ୍ବାର ତାଗିଦ୍ ଆସୁଛି । ଆମେ ସେ murder spot କୁ ଯାଇ, ବହୁତଥର Investigation କରିସାରିଲୁଣି । ଆଖପାଖରେ କୌଣସି ଗାଁ' ନାହିଁ ଯେ, କେହି ସାକ୍ଷୀ ଦେଇପାରିବେ ବା ଘଟଣା ବିଷୟରେ କିଛି କହିପାରିବେ । କାଲି Commisoner ଙ୍କ ପାଖରୁ warning ଆସିଛ ଯେ, ଏ case ଫଇସଲା ଆଠଦିନ ଭିତରେ କରିବାକୁ ହେବ; ନଚେତ୍ action ନିଆଯିବ । |
| ସୁବ୍ରତ | Oh really very sad! (କିଛି ସମୟ ସମସ୍ତେ ନୀରବ ରହିଛନ୍ତି) |
| ବିକାଶ | (ନୀରବତା ଭଂଗକରି) ମୁଁ ଗୋଟିଏ କଥା କହିବି । ମୋ କଥା ରଖିବୁ ସୁକାନ୍ତ ! |
| ସୁକାନ୍ତ | କ'ଣ କହୁନୁ ! |
| ବିକାଶ | ସବୁବେଳେ ସେ case ବିଷୟ ଚିନ୍ତାକରି ମନକୁ ଭାରି କରିବା ଅପେକ୍ଷା ଚାଲ୍, ଆଜି ଛୁଟି ଦିନଟାକୁ ହସଖୁସିରେ କଟେଇଦବା । |
| ଦେବାଶିଷ: | ସତରେ ସୁକାନ୍ତ ! ବିକାଶ ଠିକ୍ କହୁଛି । ମନକୁ ଟିକେ free ରଖ । ଦେଖିବୁ ସବୁ ସମସ୍ୟାର ସୂତ୍ର ଆପେ ଆପେ ମିଳିଯିବ । |
| ସୁବ୍ରତ | (କଥାର ମୋଡ଼ ବଦଳେଇ) ଏଇ ଚାଲ ! ଆଜି ଗୋଟେ adventure journey କରିବା ! |
| ଦେବାଶିଷ: | (ଆଶ୍ଚର୍ଯ୍ୟରେ) Advebture Journey ! |
| ସୁବ୍ରତ | ଆରେ ବୋକା ! ଏତିକି ବୁଝିପାରୁନୁ ! Adventure journey ମାନେ ଏକ ଲକ୍ଷ୍ୟହୀନ ଯାତ୍ରା ! କର୍ମମୁଖର ଜୀବନରୁ ଅବ୍ୟାହତ ନେଇ- କିଛି ରୋମାଞ୍ଚକର ଅନୁଭୂତି ସଂଗ୍ରହ କରିବା । |
| ବିକାଶ | (ଖୁସିରେ) ବାଃ ! ଚମତ୍କାର ! ଶ୍ରାବଣର ଏଇ ମେଘମେଦୁର ପ୍ରକୃତି କୋଳରେ- ଲକ୍ଷ୍ୟହୀନ ଭାବରେ ହଜିଯିବାରେ, କି ଯେ ରୋମାଞ୍ଚ ରହିଛି ଆଃ... |

Digitized by srujanika@gmail.com

ଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖଙ୍ଖ

ସୁକାନ୍ତ (ଟିକେ ଖୁସି ହେଇ) Adventure journey ତ ! ଠିକ୍ ଅଛି ! ଚାଲ, ଆଜି ଆମେ ସେଇ murder spot କୁ ଯିବା ମୋ ଜିପ୍‌ଟାତ ଅଛି । କିଛି ଅସୁବିଧା ହବନି । ପ୍ରକୃତିର ପ୍ରାଣଖୋଲା ସୌନ୍ଦର୍ଯ୍ୟକୁ ମନଭରି ଉପଭୋଗ କରିହେବ । ତା'ସହିତ ମୋର Investigation କିଛିବାଟ ଆଗେଇଯାଇପାରିବ । ନା, କ'ଣ କହୁଛ ?

ବିକାଶ ଧେତ୍ ! ସବୁବେଳେ ତୋର ଖାଲି ସେଇ ଚୋର, ଖୁନୀ, Investigation ? ନା, ବାବା ନା ! ଆଜି ଛୁଟିଦିନଟାରେ- ଅନ୍ତତଃ ସେସବୁ ରୁକ୍ଷ କଥାଗୁଡ଼ାକ ଭୁଲି ଟିକେ ଏ ଜୀବନର- ଯୌବନରେ ଅର୍ଚ୍ଚନା କର ସୁକାନ୍ତ !

ସୁକାନ୍ତ (ହସି) ହଉ ହେଲା । କବି ମହାଶୟ, ତମରି କଥା ହିଁ ହେବ । ଆଜି ଖାଲି ସ୍ୱପ୍ନ ଆଉ ସ୍ୱପ୍ନର ନୀଳପରୀ ସହିତ– ଜୀବନକୁ ମଧୁମୟ କରି ତୋଳିବା । ଏଥର ଖୁସି ତ !

ଦେବାଶିଷ: ତମେ ସବୁ ବସିଥାଅ । ମୁଁ ଟିକେ ଘରଣୀଙ୍କ ପାଖକୁ Phone ଟା କରିଦିଏ । ନହେଲେ ବିଚାରୀ... ।

ସୁବ୍ରତ ଆଚ୍ଛା, ଏଥର programme ପକ୍କା ତ ! ମୁଁ ଯାଉଛି ଶୁଭ୍ରାକୁ କହି କିଛି ଖାଦ୍ୟପେୟର ବନ୍ଦୋବସ୍ତ କରାଏ । ନ ହେଲେ କ'ଣ ଖାଇବା ?

ବିକାଶ ଶୁଭସ୍ୟ ଶୀଘ୍ରମ୍ ! ଶିଘ୍ର ସବୁ ready କର ।

ସୁକାନ୍ତ ଆରେ ହଁ ! ମୁଁ ଟିକେ ଜିପ୍‌ଟା Check କରିନିଏ ।

ବିକାଶ ଆଉ ମୁଁ ବି ମୋ ଚେହେରାଟା Check କରିନିଏ ।

(ସମସ୍ତେ ହସିଛନ୍ତି ।)

(ଅନ୍ଧାର)

Digitized by srujanika@gmail.com

## ॥ ଦ୍ୱିତୀୟ ଦୃଶ୍ୟ ॥

(ଜିପ୍ ଚାଲିବାର ଶବ୍ଦ । ତା'ସହିତ ଝିପ୍‌ଝିପ୍ ବର୍ଷାର Effect)

ସୁବ୍ରତ (ମନଖୁସିରେ ଗାଉଥାଏ) ହେ ବରଷା କିଆଁ ଝର, ଆଜି ଅବେଳରେ... କେମିତି ଯିବି ମୁଁ କହ...

ବିକାଶ ବାଃ ସୁବ୍ରତ ବାଃ ! ତୁ ବି ବିରହୀ ପାଲଟିଗଲୁ !

ସୁକାନ୍ତ ସତରେ ବିକାଶ ! ମେଘମେଦୁର ଆକାଶ ! ଝିପ୍ ଝିପ୍ ବର୍ଷା ! ତା'ସାଙ୍ଗକୁ ଶୀତୁଆ ପବନ । ଆଉ ନିଛାଟିଆ ରାସ୍ତାର ଧାରେ ଧାରେ- ସବୁଜ ଜଙ୍ଗଲର ଭିଡ଼ । ଆଃ ! କି romantic ସତେ ! ପ୍ରକୃତିର ଏତେ ସୌନ୍ଦର୍ଯ୍ୟ ମୁଁ କେବେ ଏମିତି ଅନୁଭବ କରିନଥିଲି !

ଦେବାଶିଷ: (ହାତ ତାଳି ଦେଇ) ବାଃ, ବାଃ ! ମୁଁ ଦେଖୁଛି ଆଜିର ଏଇ ଶ୍ରାବଣ ପ୍ରକୃତି- ସମସ୍ତଙ୍କ ହୃଦୟରେ କବିତାର ସାଗର ସୃଷ୍ଟି କରିପାରିଛ ! (ହଠାତ୍ ଖୁବ୍ ଜୋର୍‌ରେ ଘଡ଼ଘଡ଼ି ମାରିଛି ଏବଂ ବର୍ଷା ହେଇଛି)

ସୁକାନ୍ତ ହଠାତ୍ ବର୍ଷାର ବେଗଟା ବଢ଼ିଗଲା ଯେ !

ସୁବ୍ରତ ଏବେ କ'ଣ କରିବା ! ବର୍ଷାରେ ରାସ୍ତାଘାଟ ବି ଭଲ କି ଦିଶୁନି ! ଏଭଳି ବର୍ଷାରେ ଗାଡ଼ି ଚଳେଇବା ବିପଦଜନକ । ତା'ଛଡ଼ା ଜଙ୍ଗଲିଆ ରାସ୍ତା ।

ବିକାଶ ପାହାଡ଼ିଆ ବର୍ଷା ତ ! ଅମାନିଆଁ କିଶୋରୀ ଭଳି ଭାରି ଚପଳ । (ବର୍ଷା, ପବନର ବେଗ ବଢୁଥାଏ)

ଦେବାଶିଷ: ସୁକାନ୍ତ ! ଏବେ କ'ଣ କରିବା ? ବର୍ଷା ସାଙ୍ଗକୁ ପବନ ଦେଖୁନୁ, ରାସ୍ତାକଡ଼ର ଶାଳଗଛ ଗୁଡ଼ା କେମିତି ରାସ୍ତା ଉପରକୁ ନଇଁ ଆସୁଛି । ଦୈବାତ୍ ଯଦି ଗଛଟାଏ ଭାଙ୍ଗି ଉପରେ ପଡ଼େନା, ତେବେ କଥା ସରିଲା ।

ବିକାଶ (ଭୟଭୀତ ହେଇ) ସତରେ ! ମତେ ବି ଭୟ ଲାଗୁଛି । ବାଘ କି ଭାଲୁଟାଏ ଯଦି ହାବୁଡ଼ି ଯିବନା...

Digitized by srujanika@gmail.com

ସୁବ୍ରତ (ଘଣ୍ଟା ଦେଖି) ସମୟ ବର୍ତ୍ତମାନ ୩ଟା ବାଜି ୪୫ ମିନିଟ୍‌। ବାପ୍‌ରେ! ଏତେ ଦିନ ଥାଉ ଥାଉ, ଯେମିତି ରାତି ମାଡ଼ି ଆସିବା ଭଳି ଲାଗୁଛି। ଏଇ ସୁକାନ୍ତ! ଭାଇ ଆଉ risk ନେଇ- ଗାଡ଼ି ଚଲାନା। ଏଇଠି ରାସ୍ତା କଡ଼ରେ ଗାଡ଼ି ଠିଆ କରେଇ ଦେ।

ସୁକାନ୍ତ (ଗାଡ଼ିରେ ବ୍ରେକ୍ ଦେଇ) ହେଲେ ଏଠି ଏମିତି ଜାଗାରେ ବିପଦ ଆହୁରି ବେଶୀ।

ଦେବାଶିଷ: ଏ ପାଗରେ ଗାଡ଼ି ଚଳେଇବା ଯେ, ତା'ଠାରୁ ବେଶି ବିପଦଜନକ। କିନ୍ତୁ ଏବେ କରିବା କ'ଣ?

ବିକାଶ ବର୍ଷା ଛାଡ଼ିବା ପର୍ଯ୍ୟନ୍ତ- ଏଇ ଗାଡ଼ି ଭିତରେ ବସି ରହିବା। ଆଉ ଉପାୟ କ'ଣ?

ସୁକାନ୍ତ (ଚାରିଆଡ଼େ ନଜର ପକେଇ) ଆରେ ଦେଖିଲଣି!

ସୁବ୍ରତ କ'ଣ? କ'ଣ ସୁକାନ୍ତ? (ଆଗ୍ରହରେ ପଚାରିଛି)

ସୁକାନ୍ତ ଏଇ ମାଇଲ ଖୁଣ୍ଟକୁ ମ ! ଏଠାରୁ ଘଟଗାଁ ଆଉ ମାତ୍ର ୫ କି.ମି. ଦୂର।

ଦେବାଶିଷ: Oh, No ! ବର୍ଷା ନ ଛାଡ଼ିବା ପର୍ଯ୍ୟନ୍ତ ଆମକୁ ଏଇଠି ଏମିତି ଚୁପଚାପ୍ ବସି ରହିବାକୁ ହେବ।

ବିକାଶ (ହଠାତ୍ ପାଟିକରି) ଆରେ! ଦେଖିଲ ଦେଖିଲ! ଏଇ ବାଁ ପଟ ଶାଳବଣ ଭିତରେ- କାର୍‌ଟାଏ ରହିବା ଭଳି ଲାଗୁଛି।

ସୁବ୍ରତ (ଦେଖି) ଆରେ ହଁ ତ!

ସୁକାନ୍ତ ଆଉ ଧଳା ରଙ୍ଗର କୋଠାଘରଟିଏ ଥିବା ଭଳି ଲାଗୁଛି।

ଦେବାଶିଷ: ତା'ହେଲେ ଆଉ ଡେରି କାହିଁକି? ଚାଲ, ସେଠିକି ଯାଇ, ଘଟଣାଟା କ'ଣ ବୁଝିବା। କାଳେ ଏଇ ବିପଦ ସମୟରେ- ଆମକୁ ଆଶ୍ରା ଟିକେ ମିଳିଯାଇପାରେ?

Digitized by srujanika@gmail.com

| | |
|---|---|
| ସୁକାନ୍ତ | ଠିକ୍ ଅଛି ! ଗାଡ଼ିଟା ଏଇଠି ଥାଉ । Lock କରି ଦେଇ ଚାଲ ଯିବା । |
| | (ସମସ୍ତେ ଯାଇଛନ୍ତି) |
| ବିକାଶ | (ନିକଟକୁ ଯାଇ) ବାଃ ! ଖୁବ୍ ସୁନ୍ଦର- ଏମିତି ଏକ ଡାକବଙ୍ଗଳା ଥାଇପାରେ- ଏକଥା କିଏ ବିଶ୍ୱାସ କରିବ ? |
| ଦେବାଶିଷ: | ଏଇ ଦେଖ ! ଘର ଭିତରୁ ବୁଢ଼ାଟିଏ କିଏ ଆସୁଛି ! ବୋଧହୁଏ ଏଠିକାର ଚୌକିଦାର । ଯା'ହେଉ ମୁଣ୍ଡ ଗୁଞ୍ଜିବାକୁ ଜାଗାଟିଏ ମିଳିଗଲା । |
| | (ବୁଢ଼ା ଆସିଛି) |
| ସୁକାନ୍ତ | (ବୁଢ଼ାକୁ ପଚାରିଛି) ତମେ କ'ଣ ଏଇ ଡାକବଙ୍ଗଳାର ଚୌକିଦାର ? |
| ବୁଢ଼ା | ହଁ ଆଜ୍ଞା ! ଆପଣମାନେ କୋଉଠୁ ଆସିଛନ୍ତି ? ବର୍ଷାରେ ପୂରାପୂରି ଭିଜିଯାଇଛନ୍ତି ଯେ ! ଆସନ୍ତୁ, ଭିତରକୁ ଆସନ୍ତୁ । |
| ସୁବ୍ରତ | ଆମେ କଟକରୁ ଆସିଛୁ ମଉସା ! ବର୍ଷା ଯୋଗୁ ଫେରିଯିବା ଆଉ ସମ୍ଭବ ନୁହେଁ । ଏଣୁ ଆଜି ରାତିଟା ଏଇଠି ରହି-କାଲି ସକାଳୁ ଚାଲିଯିବୁ । |
| ବିକାଶ | ଏ ଡାକବଙ୍ଗଳାରେ ଆଉ ବୋଧହୁଏ କେହି ଅଛନ୍ତି ? ଏ ଗାଡ଼ିଟା ବୋଧହୁଏ ସେମାନଙ୍କର ! |
| ବୁଢ଼ା | ହଁ, ବାବୁ ! ଏଇଟିକେ ଆଗରୁ- ଆପଣଙ୍କ ଭଳି ଦୁଇଜଣ ବାବୁ, ବର୍ଷାଯୋଗୁ ଆସି ପହଞ୍ଚିଛନ୍ତି । ସେମାନଙ୍କ ଘର ମଧ୍ୟ କଟକ । ଆଚ୍ଛା ବାବୁ ! ସତରେ କ'ଣ ଆପଣମାନେ ଆଜି ରାତିଟା ଏଇଠି କଟେଇବେ ? |
| ସୁକାନ୍ତ | କାହିଁକି ମଉସା ? କ'ଣ କିଛି ଅସୁବିଧା ଅଛି କି ? |
| ବୁଢ଼ା | (ଥତମତ ହେଇ) ନାଇଁ ଯେ... । ହେଲେ.... । |

Digitized by srujanika@gmail.com

ବିକାଶ : ହେଲେ କ'ଣ ମଉସା ?

ବୁଢ଼ା (ଟିକେ ଧିମା ସ୍ୱରରେ) କଥା କ'ଣ କି ବାବୁ । ମୁଁ ଏଠି ନୂଆ । ମୋ ପୂର୍ବରୁ ଯେଉଁ ଚୌକିଦାର ଥିଲା, ତା'ଠାରୁ ଶୁଣିଛି ୨/୪ ବର୍ଷ ତଳେ ଏଇଠି ଜଣେ ବାବୁ, ବାବୁଆଣୀଙ୍କର ମୃତ୍ୟୁ ହେଇଥିଲା । ସେଇଦିନୁ ଏଠି–ପ୍ରତିଦିନ ରାତିରେ ଭୂତପ୍ରେତ ବିଚରଣ କରନ୍ତି । ଆଉ ସେଥିପାଇଁ, ରାତିରେ ଏଠି କେହି ରହିବାକୁ ସାହସ କରନ୍ତିନି !

ସୁବ୍ରତ (ହସି) କ'ଣ ଯେ ତୁମେ କହୁଛ ମଉସା ? ଏ ଯୁଗରେ ପୁଣି ଭୂତପ୍ରେତ ଅଛନ୍ତି ବୋଲି- ତୁମେ ବିଶ୍ୱାସ କରୁଛ !

ସୁକାନ୍ତ ମଉସା ! ତମେ କେମିତି ଏଠି ରାତିରେ ଏକୁଟିଆ ରହୁଛ ?

ବୁଢ଼ା ନାଇଁ ବାବୁ ! ମୁଁ କ'ଣ ଏଠି ରାତିରେ ରହେ ? ଦିନସାରା ଡାକବଙ୍ଗଳା ଜଗି ବସିଥାଏ । ସନ୍ଧ୍ୟାହେଲେ ମୋ ଗାଁ'କୁ ମୁଁ ଚାଲିଯାଏ । କହିଲେ ବାବୁ ! ଜୀବନପ୍ରତି କାହାର ଲୋଭ ନାହିଁ ?

ସୁକାନ୍ତ ତମ ଗାଁ'ଟା ଏଠୁ କେତେଦୂର ମଉସା ?

ବୁଢ଼ା ଏଠୁ ଆମ ଗାଆଁଟା ଦୁଇକୋଶ ଦୂର ହବ । ଆଉ ଆଖପାଖରେ ଗାଁ' ଗଣ୍ଡା କିଛି ନାହିଁ । ଖାଲି ଯାହା ଚାରିପଟେ ଜଙ୍ଗଲ । ହଁ, ଆପଣଙ୍କ ଜିନିଷପତ୍ର ସବୁ କାହିଁ ?

ବିକାଶ ଏଇ ସେଇଠି ! ରାସ୍ତାକଡ଼ରେ ଥିବା ଗାଡ଼ି ଭିତରେ ଅଛି ।

ବୁଢ଼ା ଆପଣମାନେ ଏଇଘରେ ବସିଥାଆନ୍ତୁ । ମୁଁ ଯାଉଛି ଗାଡ଼ିରୁ ଜିନିଷପତ୍ର ନେଇ ଆସିବି । (ବୁଢ଼ା ଚାଲିଯାଇଛି)

ଦେବାଶିଷ: (ଚାରିଆଡ଼େ ନଜର ପକେଇ) ମନ୍ଦ ନୁହେଁ ! ବଡ଼ ବଡ଼ bed room, Attach, bathe room ଆଉ lartin

ବିକାଶ ଆଉ ଝରକା ସେପଟେ- ଆଖି ପାଉ ନଥିବା ସବୁଜ ଜଙ୍ଗଲ ! (ବୁଢ଼ା ଆସିଛି)

Digitized by srujanika@gmail.com

ବୁଢ଼ା	ନିଅନ୍ତୁ ବାବୁ! ଆପଣଙ୍କର ସବୁ ଜିନିଷ, ଗାଡ଼ିରୁ ନେଇ ଆସିଲି, ଆଉ କିଛି ଦରକାର ଥିଲେ କୁହନ୍ତୁ ।

ସୁକାନ୍ତ	ନାଇଁ ମଉସା ! ଆଉ କଷ୍ଟ କରିବାର ଦରକାର ନାହିଁ । ତମେ ତମ କାମରେ ଯାଅ ।

ବୁଢ଼ା	ବାବୁ! ସଂଜ ହୋଇ ଆସିଲାଣି । ବର୍ଷା ବି ଟିକେ କମିଛି । ମୁଁ ଏବେ ଘରକୁ ଯାଉଛି ।

ବିକାଶ	ମଉସା ! ଘରକୁ ଯିବ ତ ! ଏତେ ତରତର କାହିଁକି ?

ବୁଢ଼ା	ନାଇଁ ବାବୁ ! ଜଙ୍ଗଲିଆ ରାସ୍ତା ! ଏଣେ ବୁଢ଼ା ଲୋକ । ବେଳ ଥାଉଁ ଥାଉଁ ନ ଗଲେ...

ସୁବ୍ରତ	ଠିକ୍ ଅଛି ମଉସା ! ତମେ ଏବେ ଯାଅ ।

ବୁଢ଼ା	(ବଡ଼ ବଡ଼ ଲ୍ୟାମ୍ପ ଦୁଇଟା ଲଗାଇ) ଏଇ ଲ୍ୟାମ୍ପ ଦୁଇଟା ଏଇଠି ରହିଲା ବାବୁ! ତେଲ ଭର୍ତ୍ତି କରିଦେଇଛି । ରାତିସାରା ଆଲୁଅ ଜଳେଇ ରଖିବ । ବୁଝିଲଟି ବାବୁ!

ଦେବାଶିଷ:	(ହସି) ଆମ ପାଇଁ ମୋଟେ ବ୍ୟସ୍ତ ହୁଅନ୍ତୁନି ମଉସା !

ବୁଢ଼ା	(ବ୍ୟସ୍ତ ହେଇ) ନାଇଁ ବାବୁ ! ରାତିଟା ଟିକେ ଜଗିରଖି କଟେଇବେ । କେତେବେଳେ କୋଉକଥା ! ଅଶରୀରୀ ଆତ୍ମାଙ୍କୁ କ'ଣ ବିଶ୍ୱାସ ଅଛି ?

ବିକାଶ	(ଥଟ୍ଟା କରି) ନାଇଁ ମ ମଉସା ! ଆମ ସାଥିରେ ପୋଲିସ୍ ଇନିସ୍ପେକ୍ଟର ଅଛି ଟି ? ଭୂତପ୍ରେତ ତ ଦୂରର କଥା, ତା'ଠଉଦ ପୁରୁଷ ବି ଆମର ଛାଇ ମାଡ଼ିବନି ।

ବୁଢ଼ା	ହଉ ବାବୁ! ମୁଁ ଏଥର ଚାଲିଲି ! ଭୋରୁ ଭୋରୁ ଆସି ପହଞ୍ଚିଯିବି ଯେ ! ହଉ ମୁଁ ଯାଉଛି ! (ଚାଲିଯାଇଛି)

(ଅନ୍ଧାର)

Digitized by srujanika@gmail.com

ଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓ

## ।। ତୃତୀୟ ଦୃଶ୍ୟ ।।

(ସମୟ ରାତ୍ରି ୮ଟା ହେବ । ବର୍ଷା ଛାଡ଼ିଯାଇଛି । ଚାରିଆଡ଼େ ଜହ୍ନ ଆଲୁଅ ପଡ଼ିଛି । ଚାରିବନ୍ଧୁ ଗପସପରେ ମାତିଛନ୍ତି । ଟେପ୍‌ରୁ ଗୀତର ସ୍ୱର ଶୁଭୁଛି)

ସୁବ୍ରତ (ଝରକା ଦେଇ ବାହାରକୁ ଦେଖି) ବର୍ଷା ଛାଡ଼ି ଯାଇଛି । ଆକାଶଟା କି ସଫା ଦିଶୁଛି । ତା'ସାଙ୍ଗକୁ ଶ୍ରାବଣ ପୂର୍ଣ୍ଣିମାର- ଏ ମତୁଆଲା ଜହ୍ନ ଆଲୁଅ ବର୍ଷାଧୁଆ ଗଛପତ୍ରଗୁଡ଼ାକ- ଜହ୍ନ ଆଲୁଅରେ ଚିକ୍ ଚିକ୍ କରୁଛି । ଆଃ ! ଅତି ସୁନ୍ଦର ।

ଦେ ବାଶୀଷ: ସତରେ ସୁବ୍ରତ ! ଜଙ୍ଗଲର ଭାଷା ଆଉ ତା'ର ସୌନ୍ଦର୍ଯ୍ୟକୁ ବୁଝିବାପାଇଁ- ସ୍ୱତନ୍ତ୍ର ମନ ଦରକାର । ସ୍ୱତନ୍ତ୍ର ହୃଦୟ ଦରକାର ।

ବିକାଶ ଏତେ ସୁନ୍ଦର ପରିବେଶକୁ ଛାଡ଼ି- ଘରସଂସାରର ଜଞ୍ଜାଳ ଭିତରକୁ ଫେରିଯିବାକୁ ଆଦୌ ଇଚ୍ଛା ହଉନିରେ... ।

ସୁବ୍ରତ ବାସ୍ତବିକ୍ ! ଏ ପରିବେଶରେ, କବିବର ରାଧାନାଥ ରାୟଙ୍କର ଉକ୍ତି ମନେପଡ଼ିଯାଉଛି । "ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।"

ସୁକାନ୍ତ ଆରେ ଭାଇ ! ଏଇ ସୁନ୍ଦର ରାତିଟାକୁ କ'ଣ ଖାଲି ଏମିତି ବସି ବସି କଟେଇଦବା ?

ଦେବାଶିଷ: ଆଉ କ'ଣ କରିବା କହ ?

ସୁକାନ୍ତ ପାଖ room ରେ ଯେଉଁ ଭଦ୍ରବ୍ୟକ୍ତି ଦୁଇଜଣ ଅଛନ୍ତି, ଚାଲ ତାଙ୍କୁ ଡାକିବା । ତା'ପରେ ରାତିସାରା ତାସ୍ ଖେଳରେ କଟେଇଦବା ।

ସୁବ୍ରତ ବାଃ ! good idea ଆଉ ଡ଼େରି କାହିଁକି ? (ଘଣ୍ଟା ଦେଖି) ରାତି ୯ ବାଜିଛି । ଚାଲ dinner ଟା ସାରିନବା । ତା'ପରେ ଖେଳରେ ବସିଯିବା ।

(ଅନ୍ଧାର)

Digitized by srujanika@gmail.com

## ॥ ଚତୁର୍ଥ ଦୃଶ୍ୟ ॥

(ସମୟ- ରାତି, ତାସ୍‌ଖେଳ ଓ ମଝିରେ ମଝିରେ ହସ ଓ କଥାବାର୍ତ୍ତାର Effect)

ବିକାଶ Hello ମୁଁ ବିକାଶ ଦାସ୍ । କଲମ ଚଳେଇବା ମୋ କାମ । ଆଉ ଏମାନେ ମୋର ବନ୍ଧୁ । ସୁବ୍ରତ ରାଉତରାୟ ଇଂଜିନିୟର, ପୋଲିସ୍ ଇନିସ୍‌ପେକ୍ଟର ସୁକାନ୍ତ ଚୌଧୁରୀ ଆଉ ଇଏ ଦେବାଶିଷ ମହାପାତ୍ର- ଲେକ୍‌ଚରର୍ ।

ରଜତ ଆପଣମାନଙ୍କ ସହିତ ପରିଚିତ ହେଇ ଖୁସି ହେଲୁ । ମୁଁ ରଜତ ସାମନ୍ତରାୟ । ମୋର ବାପା Retired judge ଅମରେଶ ସାମନ୍ତରାୟ ।

ଅଭିଜିତ୍ ଆଉ ମୁଁ ଅଭିଜିତ୍ ସେନାପତି । ମୋ ବାପା ଜଣେ business man, ବର୍ତ୍ତମାନ ମୁଁ ବାପାଙ୍କ କାମରେ Engage ଅଛି ।

ସୁକାନ୍ତ Glad to meet you ! ଆପଣମାନେ ବୋଧହୁଏ ଆମରି ଭଳି enjoy କରିବାକୁ ଆସିଛନ୍ତି ?

ରଜତ ନା, ଆଜ୍ଞା ! ଆମେ ଦୁଇଜଣ business partner. କେଉଁଝରରୁ କଟକ ଫେରିବା ବାଟରେ- ପ୍ରବଳ ବର୍ଷା ଯୋଗୁ- ଏଇଠି ଆଶ୍ରୟ ନବାକୁ ବାଧ ହେଲୁ ।

ଦେବାଶିଷ: (ହସି) ଏଠି ଆଶ୍ରୟ ନେଇ ଭୁଲ୍ କରିନାହାନ୍ତି ନିଶ୍ଚୟ । କାରଣ ଏଭଳି ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ଜାଗାଟିର ଦର୍ଶନ-ଭାଗ୍ୟରେ ଥିଲେ ମିଳେ ।

ଅଭିଜିତ୍ : (ହସି) ଆପଣ ବୋଧହୁଏ ଏଠିକି ପ୍ରଥମ କରି ଆସିଛନ୍ତି ?

ବିକାଶ ହଁ ଆଜ୍ଞା ! କିନ୍ତୁ ଆପଣ କ'ଣ ଏ ଜାଗାକୁ-ପୂର୍ବରୁ କେବେ ଆସିଥିଲେ ନା କ'ଣ ?

ରଜତ ହଁ ଆଜ୍ଞା ୩/୪ ବର୍ଷ ତଳେ, ଆମେ ଆମର ଆଉ ଦୁଇଜଣ ବନ୍ଧୁଙ୍କ ସହିତ- ଏ ଜାଗାକୁ Picnic କରିବାକୁ ଆସିଥିଲୁ । ସତରେ ଖୁବ୍ ସୁନ୍ଦର ଏ ଜାଗା ।

Digitized by srujanika@gmail.com

ସୁକାନ୍ତ : ତା'ହେଲେ ଆଜି ଆମେ ସମସ୍ତେ ମିଶି ଏ ରାତିଟାକୁ ଆନନ୍ଦରେ ଉପଭୋଗ କରିଯିବା ।

ଅଭିଜିତ : ହଁ... ହଁ... ।

ସୁକାନ୍ତ ତେବେ ଆଉ ଡେରି କାହିଁକି ? ଏଥର ଆସନ୍ତୁ ତାସ୍ ପାଲି ଖୋଲି-ବସିଯିବା । ନା, କ'ଣ କହୁଛନ୍ତି ?

ରଜତ Oh yes. ଆମେତ ରାତିଟା ସାରା bore ହେଇଥାନ୍ତୁ । ଯା'ହେଉ ଆପଣମାନଙ୍କ Company ମିଳିଗଲା ।

ବିକାଶ ଆରେ ଭାଇ ! ତମେମାନେ ସବୁ ଖେଳ ! ମୁଁ ଏଇଠି ଏଇ ଝର୍କା ପାଖରେ ବସି- ମୋ ଖିଆଲ ପାଇଁ କିଛି ଖୋରାକ୍ ସଂଗ୍ରହ କରେ ।

ସୁବ୍ରତ (ହସି) ହେଲା କବି ମହାଶୟ । ତୁ ତୋର ଜହ୍ନରାତି, ଫୁଲବନ ଆଉ ସବୁଜ ଅରଣ୍ୟ ଭିତରେ ବୁଡ଼ିରହି- କାବ୍ୟନାୟିକାକୁ ଖୋଜୁଥାଆ । ଆମେ କେହି ତତେ disturb କରିବୁନି ।

(ତା'ପରେ ଖେଳର Effect କାନ୍ଥ ଘଣ୍ଟାରେ ରାତ୍ରି ୧୧ଟା ବାଜିବାର ସୂଚନା । ହଠାତ୍ ଦରଜାରେ ଠକ୍ ଠକ୍ ଆବାଜ)

ଦେବାଶିଷ: (ଭୟାଳୁ କଣ୍ଠରେ) ସୁକାନ୍ତ ! କିଏ କବାଟ ବାଡ଼େଉଛି ନା କ'ଣ ?

ସୁକାନ୍ତ ହଁ ତ ! ହେଲେ ଏ ନିଛାଟିଆ ଜଙ୍ଗଲ ଭିତରେ ଏତେ ରାତିରେ ପୁଣି କିଏ ଆସିପାରେ ?

(ଦରଜାରେ କ୍ରମାଗତ ଠକ୍ ଠକ୍ ଆବାଜ ଶୁଭୁଥାଏ)

ରଜତ କେହି ବଦମାସ ନୁହେଁ ତ ?

ସୁବ୍ରତ (ଚୁପ୍ ଚୁପ୍) ସୁକାନ୍ତ ! ଜଗୁଆଳି ମଉସା କଥା ସତ ନୁହଁ ତ !

ସୁକାନ୍ତ ଧେତ୍ ! ତୁ ନିହାତି ଡରୁଆଟେ ! ରହ, ମୁଁ କବାଟ ଖୋଲୁଛି ।

(କବାଟ ଖୋଲିଛନ୍ତି । ଘର ଭିତରକୁ ପଶି ଆସିଯାଇଛନ୍ତି ଜଣେ ଭଦ୍ରବ୍ୟକ୍ତି । ସେ 'Hello' କହି ପଶି ଆସିଛନ୍ତି ଓ ଲ୍ୟାମ୍ପକୁ ପଛକରି ବସିପଡ଼ିଛନ୍ତି । ତାଙ୍କ ମୁହଁଟି ଅସ୍ପଷ୍ଟ ଦିଶୁଥାଏ ଓ କଣ୍ଠସ୍ୱର ଅସ୍ୱାଭାବିକ ଶୁଭୁଥାଏ)

Digitized by srujanika@gmail.com

ଭଦ୍ରବ୍ୟକ୍ତି : ଆରେ ! ଆପଣମାନେ ଠିଆ ହେଇଛନ୍ତି କାହିଁକି ? ବସନ୍ତୁନା ! କ'ଣ ମତେ ଭୟ କରୁଛନ୍ତି ?

ସୁକାନ୍ତ ନା, ନା । ହେଲେ ଆପଣ...

ଭଦ୍ରବ୍ୟକ୍ତି : ଓ... ବୁଝିଗଲି । ମୋ ଘର ଏଇଠି । ରାତ୍ରିରେ ବୁଲିବା ମୋର ଅଭ୍ୟାସ । (ରହସ୍ୟମୟ ସ୍ୱରରେ) ବିଶେଷତଃ ଏଇ ପୂର୍ଣ୍ଣିମା ରାତ୍ରି ପ୍ରତି- ମୋ ମନରେ ଏକ ଅହେତୁକ ଦୁର୍ବଳତା ରହିଛି । ଏଇ ବାଟ ଦେଇ ଯାଉଥିଲି । ହଠାତ୍, ଆପଣମାନଙ୍କ ପାଟି ଶୁଣି ଚାଲିଆସିଲି (pause) କ'ଣ, ତାସ୍ ଖେଳ ଚାଲିଛି ? ଭଲ ଭଲ ! ମୁଁ ବି ତାସ୍ ଖେଳିବାକୁ ଭଲପାଏ । ଆସନ୍ତୁନା ଖେଳିବା ।

(ଖେଳର Effect ରାତି ବାରଟା ବାଜିବାର ସୂଚନା । ହଠାତ୍ ଡାକବଙ୍ଗଳା ପଛପଟୁ ନାରୀ କଣ୍ଠର କରୁଣ ଚିତ୍କାର ଭାସିଆସିଲା । ତା' ସହିତ ବନ୍ଧୁକ ଫୁଟିବାର ଶବ୍ଦ । କିଛି ଲୋକଙ୍କର ଇତସ୍ତତଃ ପଦଧ୍ୱନି)

ବିକାଶ (ଝରକା ନିକଟରୁ ଭୟବିହ୍ୱଳ ସ୍ୱରରେ)
ଅବିନାଶ... ଏଇ.... ଏଇ ଦେଖ ।
(ସମସ୍ତେ ତା'ନିକଟକୁ ଦୌଡ଼ି ଗଲେ)

ସୁକାନ୍ତ କ'ଣ ହେଲା, କ'ଣ ହେଲା ବିକାଶ ?

ବିକାଶ (ଝରକା ବାଟେ ଇଂଗିତ କରି) ଏଇ ଦେଖ୍ । ସେ କୃଷ୍ଣଚୂଡ଼ା ଗଛ ଉହାଡ଼କୁ ।

ରଞ୍ଜତ ଏଁ ! ସେଠିତ ଜଣେ ସ୍ତ୍ରୀ ଲୋକ ଠିଆ ହୋଇଥିବା ପରି ଜଣାପଡୁଛି ।

ଦେବାଶିଷ: ଆରେ ଦେଖ୍ ଦେଖ୍ । ସ୍ତ୍ରୀ ଲୋକଟା କେମିତି ଭୟ ପାଇଲା ଭଳି ଆଗକୁ ପଛକୁ ଅନେଇ ଦୌଡ଼ିବାକୁ ଲାଗିଲାଣି ।
(ପୁଣିଥରେ ନାରୀକଣ୍ଠରେ ବିକଳ ଚିତ୍କାର ଭାସିଆସିଛି)

ସୁକାନ୍ତ କାହିଁ ? ସେ ସ୍ତ୍ରୀ ଲୋକଟା ତ ଆଉ ଦେଖାଯାଉନି । କିନ୍ତୁ ଏ

Digitized by srujanika@gmail.com

କରୁଣ ଚିତ୍କାର ! ରଜତ ବାବୁ- ସୁବ୍ରତ ଚାଲ, ଦେଖିବା ଘଟଣାଟା କ'ଣ ?

(ହଠାତ୍ ଘର ଭିତର ଲ୍ୟାମ୍ପ ଲିଭିଗଲା ଓ ଚିତ୍କାର ଅତି ଭୟାବହ କରି ତୋଳିଲା)

ବିକାଶ ଆରେ, ଆରେ, ଲ୍ୟାମ୍ପଟା ଲିଭିଗଲା ଯେ । ମତେ ଭାରି ଭୟ ଲାଗୁଛିରେ ସୁକାନ୍ତ । ଜଲ୍‌ଦି ଆଲୁଅଟି ଲଗେଇ ଦେ !

ଦେବାଶିଷ: (ଭଦ୍ରବ୍ୟକ୍ତିଙ୍କୁ) ଆରେ ! ଆପଣ ଏଠି ଏମିତି ନିଶ୍ଚିନ୍ତରେ ବସିଛନ୍ତି । ଆପଣ ତ ସ୍ଥାନୀୟ ଲୋକ । କ'ଣ ସବୁ ଏଠି ଘଟୁଛି... ।

ଭଦ୍ରବ୍ୟକ୍ତି : (ନିର୍ଲିପ୍ତଭାବେ) କ'ଣ ଭାବୁଛନ୍ତି ଆପଣମାନେ ? ସେ ମଣିଷ ନୁହେଁ । ସେ ଏକ ଅଶିରୀରୀ- ଅତୃପ୍ତ ଆତ୍ମା । ଆଜିକୁ ୩ ବର୍ଷ ତଳେ- ଏଇଠି ଏଇ ଡାକବଙ୍ଗଳାରେ ତା' ଜୀବନଦୀପ ଅକାଳରେ- ଲିଭାଇ ଦିଆଯାଇଥିଲା । ସେଇ ଦିନଠୁ ସେ ପ୍ରତି ପୂର୍ଣ୍ଣିମା ରାତ୍ରିରେ- ଏଠି ବିଚରଣ କରୁଛି । ନ୍ୟାୟ ମାଗୁଛି । ହେଲେ... ।

ବିକାଶ (ଭୟରେ) ଏ କ'ଣ କହୁଛନ୍ତି । ଅଶରୀରୀ ଆତ୍ମା । ଏସବୁ ବାଜେ କଥା ।

ସୁକାନ୍ତ (ସନ୍ଦିଗ୍‌ଧ ସ୍ୱରରେ) ହେଲେ, ଆପଣ କେମିତି ଜାଣିଲେ ? ଏହା କୌଣସି ଚୋର, ଡକାୟତ କିମ୍ୱା ବଦମାସ୍‌ର କାମ ବି ହୋଇପାରେ ?

ଭଦ୍ରବ୍ୟକ୍ତି : (ଗମ୍ଭୀର ହୋଇ) ମୁଁ ଯାହା ଅଙ୍ଗେ ନିଭେଇଛି, ତାହାହିଁ କହୁଛି । ମୃତ୍ୟୁପରେ ମଣିଷର ଆତ୍ମା ଏଇ ପୃଥିବୀରେ ବିଚରଣ କରେ । ଯେଉଁ ଆତ୍ମା ଅତୃପ୍ତ ଥାଏ- ସେ ଅଶରୀରୀର ରୂପ ଧାରଣ କରି- ତା'ର କାମନା ପୂର୍ଣ୍ଣ କରିବାକୁ ଯୁଗ ଯୁଗ ଧରି- ଅପେକ୍ଷା କରେ । ଏହା ନିରାଟ ସତ୍ୟ । ଶୁଣିବ ସେ କାହାଣୀ ?

ବିକାଶ କାହାଣୀ ?

ସୁକାନ୍ତ Very intersting, କୁହନ୍ତୁ ।

ସୁବ୍ରତ ଟିକେ ରୁହନ୍ତୁ । ଲ୍ୟାମ୍ପଟା ଜଳେଇ ଦିଏ ।

Digitized by srujanika@gmail.com

ଭଦ୍ରବ୍ୟକ୍ତି : ନା, ଥାଇ । ଆଲୋକର ଉଜ୍ଜ୍ୱଳତା ମୋ ପାଇଁ ଅସହ୍ୟ । ଅନ୍ଧାରୀ କାହାଣୀ ଅନ୍ଧକାର ଭିତରେ ହିଁ, ବର୍ଣ୍ଣନା କରିବା ସମ୍ଭବ ହେବ । ହଁ, ଏଥର ଶୁଣନ୍ତୁ ସେଇ ଅନ୍ଧାରୀ କାହାଣୀକୁ । ଆଜିକୁ ଠିକ୍ ୩ ବର୍ଷ ତଳର କଥା ! ସେଦିନ ଥାଏ ଦୋଳପୂର୍ଣ୍ଣିମା । ଏଇ ଡାକବଙ୍ଗଳାକୁ Honey moon କରିବା ପାଇଁ ଆସିଥାନ୍ତି ପ୍ରଦୀପ ଓ ଅରୁନ୍ଧତୀ ।

ରଜତ (ଭୟବିହ୍ୱଳ କଣ୍ଠରେ) ପ୍ରଦୀପ ! ଅରୁନ୍ଧତୀ । ହେଲେ ଆପଣ କେମିତି ସେମାନଙ୍କୁ ଜାଣିଲେ ?

ଭଦ୍ରବ୍ୟକ୍ତି : (କର୍କଶ ସ୍ୱରରେ) you shut up. ମୋ ପାଖରେ ଅଜଣା ବୋଲି କିଛି ନାହିଁ ବୁଝିଲ young man !

ସୁକାନ୍ତ ତମେ କ'ଣ ସେମାନଙ୍କୁ ଜାଣ ରଜତ ?

ରଜତ (ଇତସ୍ତତଃ ହୋଇ) ନା, ମାନେ ଏଇଭଳି ଘଟଣା ଶୁଣିବା ଭଳି ମନେହେଉଛି ।

ବିକାଶ ଆରେ, କଥାଟା ଆଗେ ଶୁଣ । ହଁ ଆଜ୍ଞା ଏଥର କୁହନ୍ତୁ ।

ଭଦ୍ରବ୍ୟକ୍ତି : (ଭାବପ୍ରବଣ ହୋଇ) ଦୋଳପୂର୍ଣ୍ଣିମାର ଉଛୁଳା ଜ୍ୟୋତ୍ସ୍ନା ଜୁଆର । ଚାରିଆଡ଼େ ଖାଲି ଜ୍ୟୋତ୍ସ୍ନା ଆଉ ଫୁଲର ମହୋତ୍ସବ । ଆଉ ତାରି ଭିତରେ ହଜିଯାଇଥାନ୍ତି ପ୍ରଦୀପ ଓ ଅରୁନ୍ଧତୀ...

(Flash back)

ପ୍ରଦୀପ ଅରୁ । ଜୀବନରେ ଏଇ ମଧୁର ମୁହୂର୍ତ୍ତରେ- ମୋର କ'ଣ ଇଚ୍ଛା ହୁଏ ଜାଣ ?

ଅରୁନ୍ଧତୀ : (ଖିଲି ଖିଲି ହସି) କ'ଣ ? କ'ଣ ଇଚ୍ଛାହୁଏ ତମର ?

ପ୍ରଦୀପ ତମେ ଆଉ ମୁଁ । ପ୍ରଦୀପ ଆଉ ଅରୁନ୍ଧତୀ । ଆମେ ଯଦି ଏହି ବନଭୂମିର- ଦୁଇଟି ନାମ ଅଜଣା ପକ୍ଷୀ ପାଲଟି ଯା'ନ୍ତେ । ଆଉ ସାରାଜୀବନ ନିଜ ଇଚ୍ଛାରେ- ଏ ଡାଳରୁ ସେ ଡାଳକୁ ଉଡ଼ି ଉଡ଼ି ଜୀବନର ଅମୃତ ଓ ଆସ୍ୱାଦନ କରୁଥାନ୍ତେ । ଆଃ... ! କି ସୁନ୍ଦର ହୁଅନ୍ତା । ସତେ !

Digitized by srujanika@gmail.com

ଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓ

ଅରୁନ୍ଧତୀ : ଏଇ... । ଏଇ ତ ! ଆମ ବାହାଘର ମାତ୍ର ମାସ ଗୋଟାଏ ହେଇଛି । ତମର ପୁଣି ଏ ବୈରାଗ୍ୟ ?

ପ୍ରଦୀପ ଉଁ ! ବୈରାଗ୍ୟ ? ଅରୁ ତମକୁ ଦେଖିଲେ ସନ୍ନ୍ୟାସୀ ବି ତା'ର ତପ ଭାଙ୍ଗିବାକୁ ବାଧ ହେବ । ଆଉ ମୁଁ... । ଏଇ ଆଉ ଟିକେ ପାଖକୁ ଆସନା ।

ଅରୁନ୍ଧତୀ : (ଫିସ୍ ଫିସ୍ କଣ୍ଠରେ) ମୁଁ ତ ପୂରାପୂରି ତମ ପାଖରେ ଅଛି ପ୍ରଦୀପ ।

ପ୍ରଦୀପ ଉଁ ହୁ । ଆହୁରି ନିକଟକୁ ଆସ । ଆସନା... ।

ଅରୁନ୍ଧତୀ : ଏଇ ଦୁଷ୍ଟ । ଝରକାଟା ଖୋଲା ଅଛି । କିଏ ଯଦି ଦେଖେ... ।

ପ୍ରଦୀପ ଥାଉ ଅରୁ । ଝରକା ଦେଇ ଜହ୍ନ ଆଲୁଅକୁ ଆସିବାକୁ ଦିଅ । ଏ ନିଛାଟିଆ ବନଭୂମିରେ ଆଉ କିଏ ଅଛି ଯେ, ଆମକୁ ଦେଖିବ । (ଏତିକିବେଳେ ପାଖ ରୁମ୍‌ରୁ ହସ ଓ କଥାବାର୍ତ୍ତା ଶୁଣିଛି)

ଅରୁ ଏଇ ଶୁଣୁଛ । ସେ room ରେ ଯୋଉ ଯୁବକମାନେ ଅଛନ୍ତି । ସେମାନେ ବଡ଼ ଖରାପ । କେମିତି ମଦଖାଇ, ମାତାଲ ହେଇ- କଥାବାର୍ତ୍ତା କରୁଛନ୍ତି ଶୁଣିଲ ।

ପ୍ରଦୀପ ଆମକୁ ସେଥିରୁ କ'ଣ ମିଳିବ ? ରାତି ପାହିଲେ ଆମ ବାଟରେ ଆମେ ଯିବା ।

ଅରୁ ନାଇଁମ ! ସେମାନେ ନିହାତି ଅଭଦ୍ର । ଏଇ ସନ୍ଧ୍ୟାବେଳେ ମୁଁ bathe. room ରୁ ଆସିବାବେଳେ ସେମାନେ କେମିତି ଅଶ୍ଳୀଳ ଇଂଗିତ କଲେ- ତମେ ସେ କଥା ଜାଣିନା । ଏଇ ଝରକା ପାଖରେ ଠିଆ ହେଇ- ସେମାନେ ବାଜେ ଗୀତଗୁଡ଼ାଏ ଗାଉଥିଲେ । ଆଉ ଭିତରକୁ ଉଙ୍କି ମାରି ଚାହୁଁଥିଲେ ।

ପ୍ରଦୀପ ଅରୁ ! ବଡ଼ଲୋକର ଅଲିଅଳ ସନ୍ତାନ ସେମାନେ । ଧନର ଅଭାବ ନାହିଁ । ଆଉ ଧନ ବେଶୀ ହେଲେ, ଲଗାମ ଛଡ଼ା ହେବା ସ୍ୱାଭାବିକ । ଏମାନେ ଚରସ୍, କୋକିନ୍, ହେରୋଇନ୍, ଇତ୍ୟାଦିର- ଚୋରା ବେପାର କରନ୍ତି । ନିଜେ ମଧ୍ୟ drugs ଖାଇ ବୁଦ୍ଧିଜ୍ଞାନ ହରାଇବା ସ୍ୱାଭାବିକ ।

Digitized by srujanika@gmail.com

| | |
|---|---|
| ଅରୁ | ହେଲେ, ତମେ କେମିତି ଏତେ କଥା ଜାଣିଲ ? |
| ପ୍ରଦୀପ | ସେମାନଙ୍କ ସହିତ କଥାବାର୍ତ୍ତା ହେବା ସମୟରେ ମୁଁ ସବୁ ପଚାରି ବୁଝିନେଇଛି । ଛାଡ଼୍‌– ସେ ସବୁ କଥାରେ ମୁଣ୍ଡ ଖେଳେଇବା ଆମର ଦରକାର କ'ଣ ? (କଥା ବଦଳାଇ) ମଧୁରାତି... ଯାଏ ବିତି... (ସ୍ୱର ଧରିଛନ୍ତି) |
| ଅରୁ | ମତେ କିନ୍ତୁ ଭାରି ଡର ଲାଗୁଛି । ଝରକାଟା ବନ୍ଦ କରିଦିଅନା । |
| ପ୍ରଦୀପ | ହଉ ହେଲା ବାବା । ଏଇ ଝରକାଟା ବନ୍ଦ କରି ଦେଉଛି । (ଝରକା ବନ୍ଦ କରି) ଏଥର ଡର ଛାଡ଼ିଲା ତ ! ଆରେ, ମୁଁ ପରା ତମର ପାଖରେ ଅଛି । ଜନ୍ମଜନ୍ମର ସୁଖଦୁଃଖର ସାଥୀ ହେବାପାଇଁ– ଅଗ୍ନି ଛୁଇଁ ଶପଥ କରିଛି । ମୋ ପାଖରେ ଥାଇ, ତମର ଡର କାହାକୁ ? ତା'ଛଡ଼ା ସେମାନେ ଆମର କ'ଣ କରିବେ କହିଲ ? |
| ଅରୁ | ପ୍ରଦୀପ ! (କୋଳକୁ ଆଉଜି ଯାଇଛନ୍ତି) |
| ପ୍ରଦୀପ | ଅରୁ ! ଆଜିର ଏ ରାତିଟା ଯଦି ସାତରାତି ହୋଇଯାନ୍ତା । ନା ଆଃ ! ମୁଁ ତମକୁ ଏମିତି ସାରାରାତି କୋଳରେ ଧରି ରଖିଥାନ୍ତି । ଆଉ ତମେ... । |
| ଅରୁ | ଉଁ ! ପ୍ରଦୀପ କିଛି କୁହନା ପ୍ରଦୀପ । ମତେ ଖାଲି ତମ ବାହୁବେଷ୍ଟନୀରେ ହଜିଯିବାକୁ ଦିଅ । |
| ପ୍ରଦୀପ | ଅରୁ !!! (ଏତିକିବେଳେ କବାଟରେ କରାଘାତ ଶୁଭିଛି) |
| ପ୍ରଦୀପ | (ପ୍ରକୃତିସ୍ଥ ହୋଇ) କିଏ ? |
| ବାହାରୁ | ଆଜ୍ଞା ଟିକେ ଶୁଣିବେ କି ? |
| ଅରୁ | (ଭୟଭୀତ ହୋଇ) ତମେ ଜମା କବାଟ ଖୋଲନା । ପ୍ରଦୀପ ସେଇ ମାତାଲ ଯୁବକ । ରାତି ଅଧରେ କି କାମ ଅଛି ସେମାନଙ୍କର ? |
| ପ୍ରଦୀପ | (ଧୀର ସ୍ୱରରେ) ଆଃ ! ତମେ ଏତେ ଡରୁଛ କାହିଁକି ଯେ ! |

Digitized by srujanika@gmail.com

ସେମାନଙ୍କର କ'ଣ ଦରକାର ଥାଇପାରେ ।
(ପୁଣି କରାଘାତର ସ୍ୱର)- 'sir, ଟିକେ ଶୁଣନ୍ତୁ sir !'
(ପ୍ରଦୀପ କବାଟ ଖୋଲିଛି)

ଜଣୈକ ଯୁବକ: (ହସି ମାତାଲ ସ୍ୱରରେ) ଆଜ୍ଞା ! କିଛି ମନେ କରିବେନି ! ଏତେ ରାତିରେ ଆପଣଙ୍କୁ disturb କଲୁ ।

ପ୍ରଦୀପ ନାଇଁ ଆଜ୍ଞା ! ଏଥିରେ ଭାବିବାର କ'ଣ ଅଛି ? ଏଠି ତ ଆମ ବ୍ୟତୀତ- ଆଉ କେହି ନାହାନ୍ତି । ଆମେ ଯଦି ପରସ୍ପରର କାମରେ ନ ଆସିବା... ।

୨ୟ ଅନ୍ୟଯୁବକ: (ମାତାଲ ସ୍ୱରରେ) ହଁ, ଠିକ୍ କହିଛନ୍ତି ଆପଣା ତୁ ଗୋଟିଏ ନିପଟ ମୂର୍ଖ ଦେବେନ୍ । ହେଁ, ହେଁ, ହେଁ (ହସିଛି)

ପ୍ରଦୀପ କ'ଣ ଦରକାର ଥିଲା କୁହନ୍ତୁ ତ !

ଯୁବକ (ଦାନ୍ତ ନିକୁଟି) ଏଇ ଟିକେ matches ଦରକାର ଥିଲା ! ଆମ matches ଟା ସରିଗଲା ତ ରାତିସାରା ତାସ୍‌ର ଆସର ଜମିବ । ଏଣୁ... । ଆସନ୍ତୁନା, ସାଙ୍ଗ ହେଇ ଖେଳିବା ।

୩ୟ ଅନ୍ୟଯୁବକ: ଧେତ୍ ! କି ବୁଦ୍ଧି ଯେ ତୋର ! ଦେଖୁନୁ । sir କ'ଣ ଏତେ ସୁନ୍ଦରୀ ସ୍ତ୍ରୀକୁ ଛାଡ଼ି- ରାତିସାରା ଆମ ସହିତ ତାସ୍ ଖେଳିପାରିବେ ? ମୁଁ କ'ଣ ମିଛ କହୁଛି sir ହେଁ ହେଁ ହେଁ... (ହସିଛି)

ପ୍ରଦୀପ ଏଁ ! ନା ନା ! ଆପଣ ଟିକେ ଅପେକ୍ଷା କରନ୍ତୁ । ମୁଁ ଦିଆସିଲି ଆଣୁଛି ।
(ଭିତରକୁ ପଶିଯାଇଛନ୍ତି ଓ ତାଙ୍କ ପଛେ ପଛେ ଚାରିଜଣଯାକ ପଶିଯାଇ କବାଟ ବନ୍ଦ କରିଛନ୍ତି)

ପ୍ରଦୀପ (ଚମକି) ଏଁ ! ଆପଣମାନେ କବାଟଟା ବନ୍ଦ କରିଦେଲେ କାହିଁକି ?

୪ର୍ଥ ଯୁବକ: 'ଛୁଆଟା' ! ! ! କିଛି ବୁଝିପାରୁନାହାନ୍ତିରେ... । ଏଁ... (ସମସ୍ତେ ହୋ ହୋ ହସିଛନ୍ତି)

ଅନ୍ୟଯୁବକ: ଆପଣ ରାତିସାରା- ଏଡ଼େ ସୁନ୍ଦର ଫୁଲଟି ସହିତ ଖେଳିବେ । ଆଉ ଆମେ ରାତିସାରା- ନିର୍ଜୀବ ତାସ୍‌ମୁଠା ସହିତ ଖେଳିବୁ ।

Digitized by srujanika@gmail.com

ଏଁ... । ହେଁ... ହେଁ... ହେଁ ।

ଅନ୍ୟଯୁବକ: (ହସି) ଆମର କ'ଣ ବୟସ ହେଇଛି ଫୁଲ ସହିତ ଖେଳିବାକୁ ?

ପ୍ରଦୀପ (ରାଗିଯାଇ) ଆପଣ ଏ କ'ଣ କହୁଛନ୍ତି ? ଜଣେ ଭଦ୍ରବ୍ୟକ୍ତିର bed room ରେ... ରାତି ଅଧରେ ଅନଧିକାର ପ୍ରବେଶ କରି ଏଭଳି ଅଶ୍ଳୀଳ ମନ୍ତବ୍ୟ । ଛିଃ... ଛିଃ... ଛିଃ... ।

ପ୍ରଥମ ଯୁବକ : କ'ଣ କହିଲେ ! ଭଦ୍ରବ୍ୟକ୍ତି । ଆଉ ଆମେ କ'ଣ ଅଭଦ୍ର ।

ପ୍ରଦୀପ ନୁହେଁ ତ ଆଉ କ'ଣ ? ଆପଣମାନେ ସମ୍ଭ୍ରାନ୍ତ ବଂଶର ସନ୍ତାନ ହେଇ- ଏତେ ନୀଚ ଇତର... । ଛିଃ ।

୨ୟ ଯୁବକ : ଠିକ୍ ଅଛି । ଆପଣ ଯେତେବେଳେ ଆମ ବିଷୟରେ ଏତେ କଥା ଜାଣିସାରିଲେଣି, ଏବେ ଆମ କାର୍ଯ୍ୟ ବିଷୟରେ ଟିକେ ଜାଣନ୍ତୁନା । ନା କ'ଣ ଅଭିଜିତ୍... ।

୩ୟ ଯୁବକ : ହଁ ହଁ । (ଅରୁନ୍ଧତୀ ପାଖକୁ ଯାଇ) ଏକ ଫୁଲ ଚାର୍ ମାଳି । ହେଁ... ହେଁ, ହେଁ (ହସିଛି) ଆଜି ରାତିଟା ସାର୍ଥକ ହୋଇଗଲା ।

ଅରୁ ଏ କ'ଣ କରୁଛନ୍ତି । ସବୁକଥାର ଗୋଟାଏ ସୀମା ଅଛି । ମୁଁ ଜଣେ ବିବାହିତା ମହିଳା... ଆପଣମାନେ... ।

୪ର୍ଥ ଯୁବକ: ଏଁ । ବିବାହିତା ! (ଥଟାରେ) ତା'ହେଲେ ତ ଠିକ୍ ଅଛି ।

୧ମ ଯୁବକ: ତମେ ବିବାହିତା ହୁଅ କି ଅବିବାହିତ ହୁଅ- ଆମର ସେଥିରେ ଯାଏଆସେ କ'ଣ ? ଯାହା ସୁନ୍ଦର, ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । ଆଉ ଆମେ ହେଲୁ ସୌନ୍ଦର୍ଯ୍ୟର ପୂଜାରୀ । ହେଁ... ହେଁ... ହେଁ... ।

(ଅରୁନ୍ଧତୀକୁ ଟଣାଓଟରା କରିଛନ୍ତି ଓ ଅଶ୍ଳୀଳ ହସ ହସିଛନ୍ତି)

ଅରୁ ଛାଡ଼ିଦିଅ । ଛାଡ଼ିଦିଅ ମତେ ! ଆଃ...

ପ୍ରଦୀପ ଆପଣମାନଙ୍କୁ ହାତ ଯୋଡୁଛି- ଏଭଳି କୁକର୍ମ କରନ୍ତୁ ନାହିଁ । please ଅରୁନ୍ଧତୀକୁ ଛାଡ଼ି ଦିଅନ୍ତୁ ।

୨ୟ ଯୁବକ : ଆହା, କାହିଁକି ଗୋଟେ ପାଟି କରୁଛ ଶୁଣେ ।

୧ୟ ଯୁବକ : ଆମେ ଛାଡ଼ିଦବୁ ଆଜ୍ଞା ! ହେଲେ ଫୁଲରୁ ମଧୁ ଚାଖିବା ପରେ !

Digitized by srujanika@gmail.com

(ସମସ୍ତେ ହୋ ହୋ ହୋଇ ହସିଛନ୍ତି)

ଅରୁନ୍ଧତୀ : ପ୍ରଦୀପ ! ଆଃ... ଛାଡ଼ କହୁଛି । ଛାଡ଼ ।

(ପ୍ରଦୀପ ଓ ଯୁବକମାନଙ୍କର ଧସ୍ତାଧସ୍ତି । ଅରୁନ୍ଧତୀ କବାଟ ଖୋଲି ବାହାରକୁ ପଳାଇ ଯାଇଛି । ତା'ପଛେ ପଛେ ପ୍ରଦୀପ ଓ ଯୁବକମାନେ ମଧ୍ୟ ଯାଇଛନ୍ତି)

ଅରୁ (ଦୌଡୁଥାନ୍ତି ଓ ଚିତ୍କାର କରୁଥାନ୍ତି) ମତେ ଛାଡ଼ିଦିଅ । ମତେ ଛାଡ଼ିଦିଅ... ଆଃ... (ବିକଳରେ) ପ୍ରଦୀପ ।

(ଅରୁନ୍ଧତୀ ତଳେ ପଡ଼ିଯାଇଛନ୍ତି ଓ ଯୁବକମାନେ rape କରିଛନ୍ତି)

ଅରୁ ଆଃ... ମରିଗଲି । ଆଃ... ପ୍ରଦୀପ... ।

ପ୍ରଦୀପ (କାନ୍ଦି କାନ୍ଦି) ତାକୁ ଛାଡ଼ିଦିଅ । ମୁଁ ତମ ଗୋଡ଼ ଧରୁଛି । ଅରୁକୁ ମୋର ଛାଡ଼ିଦିଅ ।

(ଏତିକିବେଳେ ଯୁବକଙ୍କ ଗୁଳି ପ୍ରଦୀପର ବକ୍ଷଭେଦ କରିଛି ଯୁବକମାନଙ୍କର ବିକଟ ହସ ଶୁଭୁଥାଏ)

ପ୍ରଦୀପ ଆଃ ! ଅରୁ... ଅରୁନ୍ଧତୀ... ।

(flash back End)

ଭଦ୍ରବ୍ୟକ୍ତି : (ସଜଳ କଣ୍ଠରେ) ଏଇ କୃଷ୍ଣଚୂଡ଼ାର ଜଙ୍ଗଲ ଭିତରେ- ପ୍ରଦୀପ କୋଳରେ ଉଲଗ୍ନା, ମୃତା ଅରୁନ୍ଧତୀଙ୍କୁ ଧରି ସବୁଦିନ ପାଇଁ- ଏଇଠି ଟଳିପଡ଼ିଲେ । ଦୁଇଟି ନିରୀହ, ନିର୍ଦ୍ଦୋଷ ଆତ୍ମାର- ଅକାଳରେ ପରିସମାପ୍ତି ଘଟିଲା । (pause) ସେମାନଙ୍କ ମୃତ୍ୟୁର ରହସ୍ୟ ଚିରଦିନ ରହସ୍ୟ ହେଇ ରହିଗଲା । ସମାଜ ଓ ଆଇନ ଦୃଷ୍ଟିରେ- ଅପମୃତ୍ୟୁର ଆଖ୍ୟା ନେଲା । ଆଜି ବି ସେଇ ଅସାମାଜିକ ଯୁବକମାନେ- ନିର୍ବିକାରରେ, ନିର୍ଦ୍ଦୋଷରେ ସମାଜରେ ବିଚରଣ କରୁଛନ୍ତି । ଆଇନ୍ ସେମାନଙ୍କୁ ଦଣ୍ଡ ଦେଇପାରିବନି । ଆଇନ୍ ବନ୍ଧା ପଡ଼ିଯାଇଛି- ମଣିଷର ଧନଦୌଲତ, ପଦପଦବୀ ନିକଟରେ । ହେଲେ, ଆତ୍ମାକୁ କେଉଁ ଆଇନର ଦଣ୍ଡ ଦେବାର କ୍ଷମତା ନାହିଁ । ଆତ୍ମା ତା'ର ପ୍ରତିଶୋଧ ନିଶ୍ଚୟ ନେବ ।

Digitized by srujanika@gmail.com

(ହଠାତ୍ ବୀଭତ୍ସ ହସ ହସିଛନ୍ତି)

ଆପଣ ପରା ଆଇନ୍‌ର ରକ୍ଷକ ଇନିସ୍‌ପେକ୍ଟର ସୁକାନ୍ତ ! ଆପଣ ସେଇ murder case ର Investigation କରୁଛନ୍ତି ନା ! ସେମାନଙ୍କ ମଧ୍ୟରୁ ଆଜି ବି ଦୁଇଜଣ ଜୀବିତ ! ଆଉ ଏଇଠି ଆପଣମାନଙ୍କ ମେଳରେ- ଭଦ୍ରତାର ମୁଖା ପିନ୍ଧି... ବିଚରଣ କରୁଛନ୍ତି । ଦେଇପାରିବେ ଦଣ୍ଡ ସେମାନଙ୍କୁ ? (pause) ନା, ତମେ ପାରିବନି Inspector; ହେଲେ ଆତ୍ମା ତାର ପ୍ରତିହିଂସା ନିଶ୍ଚୟ ପୂର୍ଣ୍ଣ କରିବ । ତମରି ଆଖି ସାମ୍ନାରେ ସେ ତା'ର ପ୍ରତିହିଂସା ନିଶ୍ଚୟ ନେବ । ପାରିବ ତ, ସେଇ ଆତ୍ମାକୁ ଦଣ୍ଡ ଦିଅ Inspector !

ସୁକାନ୍ତ (ଆଶ୍ଚର୍ଯ୍ୟରେ) ଆମ ଭିତରେ ଖୁନୀ ?

(ପୁଣିଥରେ ହସି ଉଠିଲେ ଭଦ୍ରବ୍ୟକ୍ତି)

ବିକାଶ ଇସ୍ ! ଆପଣ ଏମିତି ବିକଟାଳ ହସ ହସୁଛନ୍ତି କାହିଁକି ?

(ପୁଣି ସେଇ ହସ)

ଦେବାଶିଷ: (ଧୀମା ସ୍ୱରରେ) ଏ କ'ଣ ସୁକାନ୍ତ ? ଭଦ୍ରବ୍ୟକ୍ତିଙ୍କ ଆଖି ଦୁଇଟା ଏମିତି ଦପ୍ ଦପ୍ ଜଳୁଛି କାହିଁକି ? ଇସ୍ ! କି ଲମ୍ବା ଲମ୍ବା ଦାନ୍ତ ! ଲୋମଶ ହାତ ! ମୁହଁଟା ଗୋଟାଏ ପ୍ରେତାତ୍ମାର ମୁହଁ ଯେମିତି ।

ବିକାଶ (ଭୟରେ) ଚାଲ, ପଳେଇଚାଲ...

ଅଭିଜିତ୍ : ଆ...ପ...ଣ...(ତଣ୍ଟିରେ ଅଠା ଅଠା ହୋଇଯାଉଥିଲା)

ଭଦ୍ରବ୍ୟକ୍ତି : (ବଜ୍ରଗମ୍ଭୀର ସ୍ୱରରେ) ହଁ, ମୁଁ ସେଇ ପ୍ରଦୀପ ପଟ୍ଟନାୟକ । ଏଇ ଦେଖ, ଆଜି ବି ମୋ ଛାତିରୁ ରକ୍ତ ଝରୁଛି । ମୋ କୋଳରେ, ଆଜିବି ଅରୁନ୍ଧତୀର କ୍ଷତବିକ୍ଷତ ଶରୀର ଶୋଇରହି- ନ୍ୟାୟ ମାଗୁଛି ।

ସୁବ୍ରତ (ଭୟରେ) ଆଃ ! (ଅସ୍ପଷ୍ଟ ଚିତ୍କାର କଲେ) ଦେଖ୍ ସୁକାନ୍ତ । ଭଦ୍ରବ୍ୟକ୍ତିଙ୍କ ଛାତିରୁ ରକ୍ତର ଧାର ଝରିପଡୁଛି । ଆଉ କୋଳରେ- ଏକ ନାରୀର ନିର୍ଜ୍ଜୀବ ନଗ୍ନ ଦେହ !

(ଅଭିଜିତ୍ ଓ ରଜତ ଚିତ୍କାର କରି ଦୌଡ଼ି ପଳାଇବାକୁ ଉଦ୍ୟତ)

Digitized by srujanika@gmail.com

ଭଦ୍ରବ୍ୟକ୍ତି : କୁଆଡ଼େ ପଳାଇଯାଉଛ ରଜତ ବାବୁ । ଅଭିଜିତ୍ ବାବୁ! ମୁଁ ଅଶରୀରୀ ଆତ୍ମା । ମୋ ପ୍ରତି ହୋଇଥିବା ଅନ୍ୟାୟର ପ୍ରତିଶୋଧ- ମୁଁ ନିଶ୍ଚୟ ନେବି । ତମଭଳି ସ୍ୱେଚ୍ଛାଚାରୀ ଯୁବକମାନଙ୍କୁ- ମୁଁ ଉଚିତ ଦଣ୍ଡ ଦେବି । ଆଜି ଦିନଟିର ଅପେକ୍ଷାରେ ମୁଁ ଥିଲି... ହିଃ... ହିଃ... ହିଃ । (ହସିଛନ୍ତି)

(ଧଡ଼୍‌ଧାଡ଼୍ ହୋଇ ଟେବୁଲ୍ ଚେୟାର୍ ଶୂନ୍ୟକୁ ଉଠି ତଳେ କଚାଡ଼ି ପଡ଼ିଲା । ଲ୍ୟାମ୍ପ, କାନ୍ଥଘଣ୍ଟା ତଳେ ପଡ଼ି ଝନ୍ ଝନ୍ ହୋଇ ଭାଙ୍ଗିଗଲା । ଝରକା କବାଟ ସବୁ ସଜୋରରେ ଶବ୍ଦ କରି ବନ୍ଦ ହେଇଗଲେ । ସୁକାନ୍ତ ଅଶରୀରୀ ଉପରକୁ ଦୁଇଚାରି ରାଉଣ୍ଡ ଗୁଳି ଛାଡ଼ିଲା ।)

ଭଦ୍ରବ୍ୟକ୍ତି : (ସେମିତି ବିକଟ ହସି) ହିଃ... ହିଃ... ହିଃ... ତମେ ହାରିଗଲ Inspector ତମ ଗୁଳି ମୋ ବକ୍ଷଭେଦ କରିପାରିବନି । ମୁଁ ଯେ ଅଶରୀରୀ ଆତ୍ମା ।

(ରଜତର ତଣ୍ଟିକୁ ଚିପି ଧରିଥାଏ ଅଶରୀରୀ । ସେ ଗଁ ଗଁ ଶବ୍ଦ କରୁଥାଏ ।)

ରଜତ ଆଃ... Inspector ମତେ ବଞ୍ଚାନ୍ତୁ । ମତେ ଏ ପ୍ରେତାତ୍ମା ହାତରୁ ରକ୍ଷାକରନ୍ତୁ ।

(ଅଶରୀରୀ ବିକଟ ହସ ହସୁଥାଏ । ରଜତ ଗଁ ଗଁ ଶବ୍ଦ କରି ଶେଷ ନିଶ୍ୱାସ ତ୍ୟାଗ କଲା ।)

ଅଭିଜିତ୍ : (ଭୟରେ ବିକଳ ହୋଇ) ମତେ ବଞ୍ଚାଅ । ମତେ ବଞ୍ଚାଅ । ସେ ମତେ ରଜତ୍ ଭଳି ନିଶ୍ଚୟ ମାରି ଦେବ ।

ବିକାଶ (ଭୟରେ ଏ ଭୂତଖାନାରୁ ରକ୍ଷାକର ପ୍ରଭୁ । ଏ କବାଟଟା ଖୋଲୁନି ଯେ ।

ସୁକାନ୍ତ ସମସ୍ତେ ମିଶି କବାଟରେ ଧକ୍କା ଦିଅ ।

(ସମସ୍ତେ କବାଟରେ ଧକ୍କା ଦେଇଛନ୍ତି । କବାଟ ଖୋଲି ଯାଇଛି ଓ ସମସ୍ତେ ବାହାରକୁ ଦୌଡ଼ି ପଳାଇଛନ୍ତି) ପଛରୁ ଶୁଭୁଛି ଅଶରୀରୀର ଅଟ୍ଟହାସ୍ୟ ଓ ଅଭିଜିତ୍‌ର ଆର୍ତ୍ତ ଚିତ୍କାର ।) ( ଅନ୍ଧାର)

Digitized by srujanika@gmail.com

## ॥ ଶେଷ ଦୃଶ୍ୟ ॥

(ସମୟ- ସକାଳ । ଦେବାଶିଷର ଚେତା ଫେରିଛି)

ଦେବାଶିଷ: ଏଁ! ମୁଁ ଏଠି କେମିତି । କିଏ ଆଣିଲା ମତେ ? ଏଁ! (ରାତ୍ରିର ଘଟଣା ମନେପଡ଼ିଛି) (ଭୟରେ) ଏଁ ! ଅଶରୀରୀ ଆତ୍ମା ! ହେଲେ, ସକାଳ ତ ହେଇଗଲାଣି । ସୁକାନ୍ତ, ବିକାଶ, ସୁବ୍ରତ- ଏମାନେ ସବୁ କୁଆଡ଼େ ଗଲେ ? ଆରେ, ଡାକବଙ୍ଗଳା ପାଖରେ ଏତେ ଭିଡ଼ କାହିଁକି ? ଦେଖେ- ।

(ଡାକବଙ୍ଗଳା ପାଖକୁ ଆସିଛନ୍ତି)

ଦେବାଶିଷ: ଆରେ ସୁକାନ୍ତ ! ତୁ ଏଠି ! ଏଠାରେ ଏତେ ଲୋକଗହଳି କାହିଁକିରେ ? (ଦେଖି) ଏଁ ଅଭିଜିତ୍ । ତା'ଦେହରେ ଏତେ କ୍ଷତଚିହ୍ନ ?

ସୁକାନ୍ତ ତୁ ଟିକେ ଚୁପ୍ ରହିଲୁ ।

ଦେବାଶିଷ: ହେଲେ, ଅଭିଜିତ୍‌ର ଦେହସାରା ଏତେ କ୍ଷତ ଚିହ୍ନ; ଅଥଚ ଟୋପାଏ ବି ରକ୍ତ ତଳେ ପଡ଼ିନି । ଖାଲି ତଣ୍ଟିରେ ଏ କଣାଟା... ।

ସୁକାନ୍ତ ସବୁ ସେଇ ପ୍ରେତାତ୍ମାର କାମ ! ଆସିଲୁ, ଘର ଭିତରଟା ଟିକେ ଦେଖିଆସିବା ।

ଦେବାଶିଷ: ନାଇଁ ବାବା ! ପୁଣି ଯଦି ଆତ୍ମା ହାବୁଡ଼ି ଯିବନା ।...

ସୁକାନ୍ତ (କଥା ଛଡ଼େଇ) ଓହୋ । Don't be silly ଦେବାଶିଷ । ସକାଳ ହେଇଯାଇଛି । ଆତ୍ମା ଦିନରେ ଦେଖାଦିଏନି ! ଆ... । (ଭିତରକୁ ଯାଇଛନ୍ତି)

ଦେବାଶିଷ: (ଆଶ୍ଚର୍ଯ୍ୟରେ) ଆରେ, ଏ କ'ଣ ସ୍ୱପ୍ନ ନା ସତ୍ୟ ?

ସୁକାନ୍ତ କ'ଣ ଦେବାଶିଷ !

ଦେବାଶିଷ:- କାଲି ରାତିରେ ଟେବୁଲ୍, ଚେୟାର୍, ଘଣ୍ଟା ଯୋଉଠି ଯାହା ଥିଲା- ସବୁ ଠିକ୍ ଠିକ୍ ଜାଗାରେ ଅଛି; ହେଲେ, କାଲି ରାତିରେ ଏସବୁ ଭାଙ୍ଗି ଚୂନା ହେଇଯାଇଥିଲା ପରା ।

Digitized by srujanika@gmail.com

ଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେଲେ

ସୁକାନ୍ତ  ସବୁ ନୀରବରେ ଦେଖିଯା' ।

ଇଙ୍ଗୁଆଳି :  (ଆସିଛି) ମୁଁ କହୁଥିଲିନା ବାବୁ ! ଅଶରୀରୀଙ୍କୁ ବିଶ୍ୱାସ ନାହିଁ ବୋଲି । ଏ ଡାକବଙ୍ଗଳାଟା ଭୂତଖାନା ପାଲଟିଯାଇଛି । ଜାଣିବା ଶୁଣିବା ଲୋକେ- ଏଠି ରାତିରେ ରହିବାକୁ ସାହାସ କରନ୍ତିନି । ହେଲେ, ଆପଣ ତ ମୋ କଥାକୁ ବିଶ୍ୱାସ କଲେନି ।

ସୁକାନ୍ତ  ଏବେ ବିଶ୍ୱାସ କରୁଛୁ ମଉସା ! ଆପଣଙ୍କ କଥା ସଂପୂର୍ଣ୍ଣ ସତ୍ୟ । ଆଚ୍ଛା ମଉସା ! ଅଭିଜିତ୍‌ର ଅଚେତ୍ ଦେହଟାକୁ ଟିକେ ଗାଡ଼ିଯାଏ ନେବାର ବ୍ୟବସ୍ଥା କରନ୍ତୁନା । ତାକୁ ବଞ୍ଚେଇ ରଖିବାକୁ ପଡ଼ିବ ।

ଇଙ୍ଗୁଆଳି :  ଆପଣ ବ୍ୟସ୍ତ ହୁଅନ୍ତୁନି ବାବୁ । ମୁଁ ସବୁ ବ୍ୟବସ୍ଥା କରିଦେଉଛି । (ଚାଲିଯାଇଛି)

ଦେବାଶିଷ:  ସୁକାନ୍ତ ! ବିକାଶ, ସୁବ୍ରତ ଏମାନେ ସବୁ ଗଲେ କୁଆଡ଼େ ! କାହିଁ ମୁଁ ତ ସେମାନଙ୍କୁ ଦେଖିବାକୁ ପାଉନି ।

ସୁକାନ୍ତ  They are all right ଏଇ ଦେଖ୍ । ଗାଡ଼ି ଭିତରେ ବସିଛନ୍ତି । (ଗାଡ଼ି ପାଖକୁ ଯାଇଛନ୍ତି)

ସୁକାନ୍ତ  (ଗାଡ଼ି start କରି) ଏଥର ଆମେ ଆସୁଛୁ ମଉସା ! ନମସ୍କାର । (ଗାଡ଼ି ଚାଲିଥାଏ)

ଦେବାଶିଷ:  ଧୀରେ ଧୀରେ ସୁକାନ୍ତ । ଟିକେ ଆସ୍ତେ ଗାଡ଼ି ଚଲା ।

ସୁକାନ୍ତ  ଆମକୁ ଖୁବ୍ ଶୀଘ୍ର କଟକ ବଡ଼ ମେଡ଼ିକାଲ୍‌ରେ ପହଞ୍ଚିବାକୁ ହେବ । ଅଭିଜିତ୍‌କୁ ସୁସ୍ଥ କରିବାକୁ ହେବ ଆଉ ରଜତର ଶବ ପୋଷ୍ଟମର୍ଟମ କରାଯିବ । ନହେଲେ ମୋ case ଟା... ।

ଦେବାଶିଷ:  ତୋ case ?

ସୁକାନ୍ତ  ଏତେ ସବୁ ଘଟିଯିବା ପରେ- ତୁ କ'ଣ କିଛି ବୁଝିପାରୁନୁ ? ଆରେ, ପୂର୍ବରୁ ସେଇ ଦୁଇଜଣ ଯୁବକଙ୍କ ହତ୍ୟାକାରୀ ଆଉ ରଜତର

Digitized by srujanika@gmail.com

ହତ୍ୟାକାରୀ ଏକ ଓ ଅଭିନ୍ନ । ଅର୍ଥାତ୍ ପ୍ରଦୀପ ପଟ୍ଟନାୟକ ! ଅଶରୀରୀ ଆଉ- ଏ case ର ଏକମାତ୍ର ସାକ୍ଷୀ ଅଭିଜିତ୍ ଏବେବି ଜୀବିତ । ତାକୁ ଯେମିତି ହଉ- ବଞ୍ଚେଇ ରଖିବାକୁ ହେବ ।

ଦେବାଶିଷ: ବାଃ... ତୋ case ର ସମାଧାନ ହେଇଗଲା । Oh God ! ଆରେ ବିକାଶ, ସୁବ୍ରତ । ତମେ ଦୁଇଜଣ କ'ଣ ମୂକ ପାଲଟିଗଲ ନା କ'ଣ ?

ବିକାଶ (ଚମକି) ଏଁ ନା ! ମତେ କିଛି କହନାରେ । ଭଗବାନ୍ଙ୍କ ଦୟାରୁ- ଏ ଜୀବନଟା କେମିତି ରହିଗଲା କହ ।

ସୁବ୍ରତ ମତେ ତ ସବୁ ଘଟଣା- ସିନେମା ଦେଖିବା ଭଳି ଲାଗୁଛି ।

ସୁକାନ୍ତ ସତରେ ଦେବାଶିଷ । ଏ adventure journey ବେଶ୍ ରୋମାଞ୍ଚପୂର୍ଣ୍ଣ । ଏ adventure ରୁ ମୋ କେଶ୍‌ର ରହସ୍ୟଟା ମିଳିଗଲା । Thank God ହେଲେ କେହି କ'ଣ ବିଶ୍ୱାସ କରିବ ଯେ, ଗୋଟାଏ ଅଶରୀରୀ ଆତ୍ମା- ଏତେ ବେଶୀ ପ୍ରତିହିଂସାପ୍ରବଣ ହୋଇ ପ୍ରତିଶୋଧ ନେଇପାରେ ବୋଲି !!!

(ଗାଡ଼ି ଚାଲିବାର ଶବ୍ଦ ଦୂରକୁ ଦୂରକୁ ଯାଇ ମିଳାଇ ଯାଇଛି)

(ସମାପ୍ତ)

❐

Digitized by srujanika@gmail.com



# ସମାଜ ସୁଧାର ସଂଘ

Digitized by srujanika@gmail.com

# ଚରିତ୍ର

ରୂପବାଳା : ସଂପାଦିକା (ମଫସଲି ମହିଳା । ବୟସ- ୩୦/୩୨ ବର୍ଷ)

ଶିପ୍ରା ସଭ୍ୟା (ଶିକ୍ଷିତା, ବୟସ ୩୦/୩୨ ବର୍ଷ)

ଲତା ସଭ୍ୟା (ଶିକ୍ଷିତା, ବୟସ- ୩୦/୩୨ ବର୍ଷ)

ବିନୟ ବୟସ- ୩୫/୩୬ ବର୍ଷ (ରୂପବାଳାର ସ୍ୱାମୀ)

ମହେନ୍ଦ୍ର ବୟସ- ୩୪/୩୫ ବର୍ଷ (ଶିପ୍ରାର ସ୍ୱାମୀ)

ଦିବାକର ବୟସ- ୩୩/୩୪ ବର୍ଷ (ଲତାର ସ୍ୱାମୀ)

ବଡ଼ବାବୁ : ବୟସ- ୩୮/୩୯ ବର୍ଷ

Digitized by srujanika@gmail.com

## ॥ ପ୍ରଥମ ଦୃଶ୍ୟ ॥

(ସାଧାରଣ ସଭାର Effect ମାଇକ୍ରୋଫୋନ୍‌ର ଶବ୍ଦ । ନାରୀ କଣ୍ଠର ସ୍ୱର- "ଦୟାକରି ନୀରବତା ରକ୍ଷା କରନ୍ତୁ ।" ତା'ପରେ ରୂପବାଳାଙ୍କର ବକ୍ତବ୍ୟ ଆରମ୍ଭ ।)

ରୂପବାଳା : ମୋର ଅତି ପ୍ରିୟ ଏବଂ ଅତି ଆପଣାର ମାଆ ମାଉସୀ ଓ ଭଉଣୀମାନେ । ମୁଁ ଆଜି (କଣ୍ଠ ଝାଡ଼ି) ମୁଁ ଆଜି ଏ ସଭାରେ, ବହୁତ କିଛି କହିବାକୁ ଠିକ୍ କରି ଆସିଛି । ଆପଣମାନେ ତ ମୋତେ ନିଶ୍ଚୟ ଜାଣିଥିବେ । ତଥାପି ମୋର ପରିଚୟଟା ଦେଇଦଉଛି । ମୁଁ ହେଉଛି ଏ ସଂଘର ସଂପାଦିକା । ମୋର ନାମ ଶ୍ରୀମତୀ ରୂପବାଳା ପଟ୍ଟନାୟକ । (ଟିକେ ରହି ଗଳା ଝାଡ଼ି) ହଁ, ଆପଣମାନେ ଜାଣନ୍ତି- ଯୁଗ ଯୁଗ ଧରି ଆମର ଏ ମାଇପି ଜାତିଟା- ପୁରୁଷଙ୍କ ପାଖରେ ମେଣ୍ଢାଭଳି ଷଣ୍ଢ ନୁଆଁଇ ଚଳିଆସୁଛି । ଆମ ମାଇପି ଜାତିଟା- ମାଡ଼ ଖାଇ ଓଢ଼ଣାତଳେ ନାକ ସଙ୍କେଇ କାନ୍ଦି ଜାଣିଛି- ହେଲେ ପାଟି ଫିଟେଇ କାହାକୁ କିଛି କହି ଜାଣିନି । ଆଉ ଏଇଥିପାଇଁ, ଆମକୁ ଏଇ ସମାଜ ଆଜି କବିତା-ବନିତା-ଲତା ସଜେଇଛି । ଆମେ କୁଆଡ଼େ ପୁରୁଷଙ୍କ ଦେହରେ-ମନରେ ନ ଲଟେଇଲେ ବଞ୍ଚି ପାରିବାନି ! ହୁଁ ! !

Audience : ଖଡ୍ଗମୁଖାଏ ଦେଲେ, ପୁରୁଷପଣିଆଁର ଫିଟ୍ ଫାଟ୍ କୁଆଡ଼େ ଛାଡ଼ିଯିବ... ଆରେ... । (ପାଟିତୁଣ୍ଡର ଶବ୍ଦ)

ଶିପ୍ରା ଶାନ୍ତି ! ଭଉଣୀମାନେ ଦୟାକରି ଶାନ୍ତିରକ୍ଷା କରନ୍ତୁ ।

ରୂପବାଳା : ଆହୁରି ଅଛି ଭଉଣୀମାନେ ! ମୁଁ ଆହୁରି କହିବି । ମୁଁ ଏମିତି କହିବି ଯେ, ଆପଣମାନେ ହସିବେ- କାନ୍ଦିବେ- ରାଗିବେ- ରୁଷିବେ । ଶେଷରେ... ଶେଷରେ...

(ତଣ୍ଟିରେ କ'ଣ ଲାଗିବା ଭଳି କାଶିଛନ୍ତି)

Digitized by srujanika@gmail.com

ଶିପ୍ରା (ଫିସ୍ ଫିସ୍ କଣ୍ଠରେ) ରୁପା ଅପା ! ପାନ ଖଣ୍ଡେ ନବ କି । ତଣ୍ଟିଟା ଅଠା ହେଇଯିବଣି...

ରୁପା ଦଉନୁ ଦେ ! (ପାନ ଚୋବେଇ) ହଁ, ମୁଁ କ'ଣ କହୁଥିଲି କି ଏଇ ମିଣିପିଗୁଡ଼ା କମ୍‌କି ! ତାଙ୍କ ଚଉଦପୁରୁଷରେ ଆମ ଭଳିଆ ସ୍ତ୍ରୀ ପାଇବେନା ! ମାଇପିଙ୍କି ଦେଖିଲେ ଖାଲି ଦାନ୍ତ ନିକୁଟି...

ଶିପ୍ରା ରୁପା ଅପା ! ଏ କ'ଣ କହୁଛ ? ଭାଷଣ... ଭାଷଣ ଦିଅ ।

ରୁପା : ଉଁ, ହୁଁ । (ସଚେତନ ହୋଇ) କ'ଣ କରିବି ବନ୍ଧୁଗଣ ! ନାରୀ ଜାତିର କଷଣ ଦେଖି ଦେଖି, ମୁଣ୍ଡଟା ଏମିତି ଗରମ ହେଇଯାଉଛି ଯେ, ପାଟିରୁ କ'ଣ ନାଇଁ କ'ଣ ବାହାରିପଡୁଚି (ଗଳାଝାଡ଼ି) । ହଁ ଭଉଣୀମାନେ । ଝିଅମାନେ ପାଠ ପଢ଼ିଲେ କାଳେ ଖରାପ ହେଇଯିବେ- ଝିଅ ଘିଅ । ବେଶୀ ଦିନ ରହିଲେ ଘର ଗନ୍ଧେଇବ । ଆଉ ଗାଁ, ସାଇଭାଇ ସବୁଆଡ଼େ ସେ ଗନ୍ଧ ବ୍ୟାପିଯିବ । ଏଣୁ ତାକୁ ଚଞ୍ଚଳ ଉଠେଇଦବା ଭଲା ପୁଣି କ'ଣ ନା "ଝିଅ ଜନମ ପର ଘରକୁ, ଝିଅ ଜନମ ଚୁଲୀ ମୁଣ୍ଡକୁ"—ଏମିତି ଗୁଡ଼ାଏ ମନଗଢ଼ା କଥା କହି, ଆମ ସମାଜପତିମାନେ ବୁଢ଼ା-ହଡ଼ା- ଦରବୁଢ଼ା- କେମ୍ପା, କୁଜା- ଚୋର- ବଦମାସ ଯାହା ସାଙ୍ଗରେ ନାଇଁ ତା ସାଙ୍ଗରେ, ବାନ୍ଧା କରେଇ ଦିଅନ୍ତି । ଆଉ ଶାଶୁଘର । ହୁଃ ! ଶାଶୁଘର କଥା ନ କହିଲେ ଭଲ । (ମଝିରେ ମଝିରେ ପାନ ଚୋବାଉଥାନ୍ତି) ସ୍ତ୍ରୀ ହେଉଛି କୁଳର ଲକ୍ଷ୍ମୀ । ତା'ର ସ୍ଥାନ ଚୁଲୀ ମୁଣ୍ଡର ଧୂଆଁ ନିକଟରେ । ସଂସାର ଯାକର ସବୁ କଷଣ ସେ ସହିବ । ସବୁ ନିନ୍ଦା, ଅପବାଦ, ଅପମାନ ସହି ଅନ୍ୟକୁ ହସେଇବ । ପତି ପରମ ଦେବତା ବୋଲି ମାନିଥବ । ପତି ପଛେ ମଦ ଖାଇ ଟାଙ୍କେ ଛେଚୁ, ତେବେ ଯାଇ ସେ ହବ ସୁନାବୋହୂ ! ! (ମଝିରେ ମଝିରେ ତାଳିର ଶବ୍ଦ) ପତିଦେବତା ସ୍ତ୍ରୀର ଭଲମନ୍ଦ ନ ବୁଝି, ତା ଦେହର ଗହଣା ବିକି ମଉଜ କରୁ; କିନ୍ତୁ ସ୍ତ୍ରୀ ତାକୁ ପୂଜା କରିବ । ନ ହେଲେ କାଳେ ନରକରେ ପଡ଼ିବ । (ପୁଣି କାଶିଛି)

Audience : (ହସ ଓ କରତାଳି)

Digitized by srujanika@gmail.com

ରୁପା (ପାଣି ପିଇଛି) ଏଇଠି ଗୋଟେ କଥା ମୋର ମନେପଡୁଚି । ଏଇ ମାସେ ତଳର କଥା । ମୋର ଜଣେ ସାଙ୍ଗ, ସିଏ ଭୁବନେଶ୍ୱରରେ ରହେ । ହଠାତ୍ ଦିନେ ମୋ ପାଖକୁ ଆସି ଖୁବ୍ କାନ୍ଦିଲା । କାରଣ କ'ଣ ଜାଣନ୍ତି ? ତା'ସ୍ୱାମୀ ତାକୁ ଅଯୋଗ୍ୟ- ଅସୁନ୍ଦରୀ ବୋଲି କହି, ନିତି ମାରଧର କରୁଛି । ତାକୁ ଧମକ ଦଉଛି ବାପଘରୁ ୧୫ ହଜାର ଟଙ୍କା ଆଣିଲେ ପତିଦେବତାଙ୍କ ରାଗ ଶାନ୍ତ ହବ- ନ ହେଲେ ତାକୁ ଛାଡ଼ପତ୍ର ଦେଇଦେବେ । ବିଚାରୀ (କାନ୍ଦ କାନ୍ଦ ସ୍ୱରରେ) ମାଡ଼ଖାଇ ତା' ପିଠି ଛିଆ ଛିଆ ହୋଇଯାଇଥିଲା । କେଡ଼େ ଗେଲବସରରେ ବଢ଼ିନଥିଲା । ତାର ପୁଣି ଏଇ ଦୁଃଖ ( ସୁଁ ସୁଁ କାନ୍ଦିଛି) । ତା'ର ଏ ଦୁଃଖ ଦେଖି, ମୋ ଆଖିରେ ଲୁହ ରହିଲାନି ! (ତା'ପରେ ଟିକେ ସ୍ପଷ୍ଟ ସ୍ୱରରେ) ମୁଁ କ'ଣ କଲି ଜାଣନ୍ତି ? ମୁଁ ତାକୁ କହିଲି ତୋର ଆଜି ସେଠି ରହିବା ଦରକାର ନାହିଁ । ତୁ କ'ଣ ନିଜ ପେଟ ନିଜେ ପୋଷି ପାରିବୁନି ? ମୁଁ ତାକୁ ଆମ କଲୋନୀରେ ଯେଉଁ ଇଂଗ୍ରାଜୀ ସ୍କୁଲ୍ ଖୋଲିଛି- ସେଇଠି ରଖେଇଦେଲି । ବିଚାରୀ ବଞ୍ଚିଗଲା ! !

Audience : ଆପଣ ମହାନ୍ ମିସେସ୍ ପଟ୍ଟନାୟକ ! (ହାତ ତାଳି)

ରୁପା (ଗଦ୍ ଗଦ୍ ସ୍ୱରରେ) ଭଉଣୀମାନେ ! ମୁଁ କାହାପାଇଁ କ'ଣ କରିପାରୁଛି । ସବୁ ସେଇ ଦୟାମୟଙ୍କର ଲୀଳା । ମୁଁ ଛାର୍ ମାଇପିଟାଏ ।

Audience : ଆପଣ ଆମ ନାରୀଜାତିର ଗର୍ବ ।

ରୁପା : ହଁ ଭଉଣୀମାନେ । ଆମ ନାରୀ ଜାତିର ଯେତେ ସମସ୍ୟା ଅଛି କହି ବସିଲେ ଦିନ ପାହି ରାତି ହବ ରାତି ପାହି ଦିନ ହେବ । ତଥାପି ଆମ ପ୍ରତି ହେଉଥିବା ଅନ୍ୟାୟ- ଅତ୍ୟାଚାର- ଅବିଚାରର ହିସାବ ସରିବ ନାହିଁ । ଭଉଣୀମାନେ ! ଏ ସବୁ ବନ୍ଦ କରିବାକୁ ହେବ । (ଜୋର୍‌ରେ) ଆମ ଅଧିକାର ଆମେ ପାଇବାପାଇଁ ନିଜେ ଲଢ଼ିବା । କଳେବଳେ କଉଶଳେ ଆମ ନାରୀଜାତିର ସମ୍ମାନ ଫେରେଇ

Digitized by srujanika@gmail.com

ଆଣିବା । କଥାରେ ନ ହେଲେ କାମରେ ଦେଖେଇଦବା । ଖାଲି ଆପଣମାନେ ସାହାଯ୍ୟ ଓ ସହଯୋଗ କଲେ ହେଲା ।

Audience : ଆମେ ଲଢ଼ିବୁ... ଆମେ ଲଢ଼ିବୁ...

ରୁପା ଆମେ ପ୍ରମାଣ କରିଦେବା ଭଉଣୀମାନେ, ଯେ ମାଇପି ଜନମ ଖାଲି ଚୁଲୀମୁଣ୍ଡକୁ ନୁହେଁ । ଆମେ ଖାଲି ଛୁଆ ଜନମ କରିବାର କଳ ନୋହୁଁ କି କାଠର କଣ୍ଢେଇ ନୋହୁଁ ।

Audience : (ହାତ ତାଳି)

ରୁପା ତେବେ ଆଜି ଆସନ୍ତୁ ଭଉଣୀମାନେ । ଏ ସଭାରେ ସମସ୍ତେ ଠିକ୍ କରନ୍ତୁ । ଆମର ପ୍ରଥମ କାମ କ'ଣ ହେବ ।

Audience : ଆନ୍ଦୋଳନ ! ଅସହଯୋଗ ଆନ୍ଦୋଳନ ।

(ହଁ ହଁ ଅସହଯୋଗ ଆନ୍ଦୋଳନ"– ସମସ୍ତେ ଏକ ସ୍ୱରରେ କହିଛନ୍ତି ।) (ହାତତାଳି)

ରୁପା ଆପଣମାନେ ଠିକ୍ କହିଛନ୍ତି । ଆମେ ଆମର ଏଇ ଆନ୍ଦୋଳନ ପ୍ରଥମେ ନିଜ ଘରୁ ଆରମ୍ଭ କରିବା । ଅର୍ଥାତ୍ ଆମେ ଆଉ ଡଙ୍କି, କରଚୁଲୀ ଧରି ରୋଷେଇ କରିବାନି କି ଘରର କୌଣସି କାମରେ ସହଯୋଗ କରିବାନି । ଆମେ ପୁରୁଷମାନଙ୍କର ସହଧର୍ମିଣୀ । ସେମାନେ ବି ଆମର ସହଧର୍ମୀ । ତା' ହେଲେ ଆମେ ସବୁବେଳେ ଘର ଜଞ୍ଜାଳରେ ଘାଣ୍ଟି ହବା କାହିଁକି ? ସେମାନେ କାହିଁକି ଖାଲି ହାଓ୍ୱା ଖାଇ ବୁଲୁଥିବେ ?

Audience : (ହାତ ତାଳି) Bravo ! Bravo ମିସେସ୍ ପଟ୍ଟନାୟକ । ଆମେ ଆପଣଙ୍କ ସହିତ ଏକମତ ।

ଝନୈକା : କିନ୍ତୁ Madam ! ସେମାନେତ ସପ୍ତାହର ୬ ଦିନ ଦିନଯାକ office ଯିବେ । ଘରେ ରହିଲେ ସିନା ଆମ ଆନ୍ଦୋଳନ କାର୍ଯ୍ୟକାରୀ ହବ । ଛୁଆଗୁଡ଼ା ସିନା ହଇରାଣ ହେବେ ।

ରୁପା : ହୁଁଃ ! ଠିକ୍ ଅଛି । ରବିବାର ଦିନ ତ ସବୁ ପୁରୁଷ ଘରେ ରହିବେ । ସପ୍ତାହର ସେଇ ଗୋଟିଏ ଦିନ ଆମର ଅଖଚକ ସବୁ ବନ୍ଦ । ଅନ୍ୟ

Digitized by srujanika@gmail.com

ଦିନମାନଙ୍କରେ ବି ସେମାନେ ଆମ କାମରେ ସାହାଯ୍ୟ କରିବେ । କ'ଣ ହେଲା ତ ?

Audience : (ହାତତାଳି) ମିସେସ୍ ପଟ୍ଟନାୟକ ଜିନ୍ଦାବାଦ ଜିନ୍ଦାବାଦ ! ନାରୀକଲ୍ୟାଣ ସଂଘ ଜିନ୍ଦାବାଦ ଜିନ୍ଦାବାଦ !

ଶିପ୍ରା ଆଜି ତେବେ ଆମ କାର୍ଯ୍ୟକ୍ରମ ଏଇଠି ଶେଷ କରିବା । ମୋର ଅନୁରୋଧ, ଆସନ୍ତା ରବିବାର ଦିନ, ଆମେ ସମସ୍ତେ ଠିକ୍ ଦିନ ୧୦ଟା ବେଳକୁ- ପୁଣି ଏଇଠି ଏକାଠି ହେବା ।

(ଅନ୍ଧାର)

## ॥ ଦ୍ୱିତୀୟ ଦୃଶ୍ୟ ॥

(ରବିବାର । ସମୟ- ସକାଳ । ରେଡ଼ିଓରୁ ଭଜନର ସ୍ୱର ଶୁଭୁଛି)

ବିନୟ (ହାଇମାରି ଅଳସ ଭାଙ୍ଗିବା ସ୍ୱରରେ) ରୁପା... ରୂପବାଳା... ରୁପା darling... (ଗେହ୍ଲେଇ କରି ଡାକୁଛନ୍ତି)

ରୁପା (ଭିତରୁ) ସକାଳୁ ସକାଳୁ କାହିଁକି ଏ ସୁଆଗିଆ ଡାକ, ଶୁଣେ ?

ବିନୟ (ଗେହ୍ଲେଇ ହେଇ) ଓହୋ ! ରୂପବାଳା । ମୁଁ କାହିଁକି ସକାଳୁ ସକାଳୁ ଏମିତି ଡାକୁଛି- ତାହା କ'ଣ ତମେ ଜାଣନା ?

ରୁପା (ଆସିଛନ୍ତି) ମଲା ମୋର ! ମୁଁ କ'ଣ ଜଉତିଷ ନା ପଣ୍ଡିତ ଯେ, ତମ ମୁହଁ ଦେଖି, ତମ ମନକଥା ଜାଣି ପକେଇବି ।

ବିନୟ ହଇହୋ ! ଦଶବର୍ଷ ଧରି ମୋ ସହିତ ଘର ସଂସାର କଲଣି । ତମ ସ୍ୱାମୀ ମନକଥାଟା ଆଜିଯାଏ ଜାଣିପାରିଲାନି ? ଧିକ୍ ମୋ ସ୍ୱାମୀପଣିଆକୁ ।

ରୁପା : କାହିଁକି ମିଛଟାରେ ଛଟା ଗାଳୁଛ ବା । ଯଦି ମୁଁ କୋଉ କଥାଟା ଜାଣିସୁଦ୍ଧା ଜାଣି ନ ପାରୁଛି- ତା'ହେଲେ ତମେ ସେ କଥାଟା ଖୋଲାଖୋଲି କହିଦେଲେ, କ'ଣ ତମ 'ପେଷ୍ଟିଜ୍' ଚାଲିଯାଉଛି କି ?

Digitized by srujanika@gmail.com

ବିନୟ : ତମେ କ'ଣ ଜାଣନା darling ! ଏଇ ସକାଳୁ ସକାଳୁ ତମ ହାତ ତିଆରି- ଗରମ ଚା' କପେ ତଣ୍ଟିକୁ ଓଦା ନ କଲେ- ସାରା ଦିନଟା ମତେ କେମିତି ପାଣିଚିଆ ପାଣିଚିଆ ଲାଗେ ? ମୁଣ୍ଡ ଭିତରେ ଖାଲି କଳକାରଖାନା ଭଳି ଘୁଁ ଘାଁ ହୋ ହଲ୍ଲା ଶବ୍ଦ ହୁଏ ।

ରୁପା ଥାଉ ଥାଉ । ବହୁତ ହେଇଗଲା । ତମରଂ ସେ ତେଲାତେଲି, ଟେକାଟେକି କଥା ଆଉ ଚଳିବନି ବା । ନିଜେ ଉଠି ନିଜ ହାତରେ ଚାହା ତିଆରି କରି ପିଅ । ମତେ ସମୟ ନାହିଁ... ହୁଁଃ... ।

ବିନୟ ରୁପା... ରୂପବାଳା... ରୁପା darling ! ଆଜି ଏ କି କଥା ଶୁଣାଇଲ ? ରବିବାର ଛୁଟିଦିନଟାକୁ ତମେ, ମାନେ ନିହାତି ବେଦିଲିଆ... ବେରସିକିଆ କରିଦେଲ । କୋଉ କଥା ପାଇଁ ଅଭିମାନ କରିଛ darling... ?

ରୁପା (ବିରକ୍ତିରେ) ରଖ ହୋ ତମର ସୁଆଗିଆ ଡାକ । ହୁଁଃ !! ଯାହା କହିଲି ସେୟା କର । ନ ହେଲେ ସେମିତି ବୁଢ଼ାଶୁଆ ଭଳିଆ କଟର କଟର ହଉଥାଅ । ରବିବାର, ଛୁଟିଦିନ ସବୁ ଏଇ ମରଦଙ୍କ ପାଇଁ । ଆମେ ମାଇପିଗୁଡ଼ାକ ଯେମିତି ମଣିଷ ନୋହୁଁ ।

ବିନୟ ହଠାତ୍ ଏ ମରଦଜାତି ଉପରେ- ଏମିତି ରାଗିବାର କାରଣଟା କ'ଣ ରୁପା ?

ରୁପା ଆଉ ତମ ମରଦମାନଙ୍କର ଆଖିବୁଜା ଶାସନ ଚଳିବନି ବୁଝିଲ ?

ବିନୟ ମାନେ ?

ରୁପା ମାନେ ? ମାନେ ଅସହଯୋଗ ।

ବିନୟ : ଅସହଯୋଗ ! (ହସି) ହଇହୋ ! ଅସହଯୋଗ ସିନା ଭାରତ ସ୍ୱାଧୀନ ହେବା ପୂର୍ବରୁ ଚାଲୁଥିଲା । ଗାନ୍ଧିଜୀ ଇଂରେଜମାନଙ୍କ ସହ ଅସହଯୋଗ ଚଳେଇ, ଭାରତକୁ ସ୍ୱାଧୀନ କରିଥିଲେ । ବର୍ତ୍ତମାନ ତ ଆମେ ସ୍ୱାଧୀନ । ସ୍ୱାଧୀନ ଦେଶରେ ପୁଣି ଏ ଅସହଯୋଗ କାହା ବିରୁଦ୍ଧରେ ?

Digitized by srujanika@gmail.com

କିଏ କରିବ ? ଯଦି କରେ, ତେବେ ବା କାହିଁକି କରିବ ?

ରୁପା (ବିରକ୍ତିରେ) ଥାଉ ଥାଉ । ତମର ସେ ବର୍ଣ୍ଣନା ସେତିକି ଥାଉ । ମୁଁ ବୁଝେଇ ଦଉଛି । ଟିକେ କାନଖୋଲି ଶୁଣ ।

ବିନୟ ଏଇ ତ କାନଖୋଲା ରଖିଛି । ଏଥର କୁହ ରୂପା କୁହ ।

ରୁପା ଏ ଅସହଯୋଗ ନାରୀ ସ୍ୱାଧୀନତାର ଅସହଯୋଗ । ଏ ଅସହଯୋଗ- ତମରି ଭଳି କରମକୋଡ଼ି ସ୍ୱାର୍ଥପର ମିଣିପଙ୍କ ବିରୁଦ୍ଧରେ । ଆଉ ଏ ଆନ୍ଦୋଳନ କରିବୁ ଆମେମାନେ, ମୁଁ- ମୋରି ଭଳି ଏ ଦେଶର ଲକ୍ଷ ଲକ୍ଷ ନାରୀ ! !

ବିନୟ (ବିସ୍ମୟରେ) ମାନେ ! ! ମୁଁ କିଛି ବୁଝିପାରୁନି ରୁପା । ତମେ କ'ଣ ଯେ କହୁଛ...

ରୁପା ତମେ ଯାହା ଶୁଣୁଛ- ମୁଁ ଠିକ୍ ସେଇଆ କହୁଛି । ଆଜିଠାରୁ ପ୍ରତ୍ୟେକ ରବିବାର ଦିନ ଆମର ଅଖବନ୍ଦ୍- ଚକବନ୍ଦ, ଅର୍ଥାତ୍ ଆମ ହାତରୁ ହାଣ୍ଡିଚୁଲୀ ଯାଇ- ତମମାନଙ୍କ ଭଳି ସୁଯୋଗ୍ୟ ପତିଦେବଙ୍କ ହାତରେ...

ବିନୟ (ଥଟ୍ଟାରେ ହସି) କ'ଣ ଯେ ତମେ କୁହ । ସକାଳୁ ସକାଳୁ ଏ ଟାହିଟାପରା । ଆଜି ରବିବାର । ଟିକେ ମାଛ କି ମାଂସ...

ରୁପା (କଥା ଛଡ଼େଇ) ଇଏ ଟାହି ନୁହଁ କି ଟାପରା । ନୁହେଁ ମ ! ହଇହୋ ସପ୍ତାହର ସାତଦିନ ଯାକ, ଆମେ ଖାଲି ସକାଳୁ ସଞ୍ଜଯାଏ ଘରଟାଯାକର ଜଞ୍ଜାଳରେ ଘାଣ୍ଟି ହଉଥିବୁ । ଆଉ ତମେ ସବୁ ନ' ଟିଅଣ ଛ' ଭଜା ଖାଇ ପଙ୍ଖାତଳେ ବସି ମଜା ମାରୁଥିବ, ନାଇଁ ? ଏଣିକି ଆମେ ବସିବୁ, ତମମାନଙ୍କ ହାତରନ୍ଧା ଖାଇ ରେଷ୍ଟ ନବୁ ।

ବିନୟ (ବିକଳରେ) ରୁପା । ଇଏ ଗୋଟାଏ କଥା... । ତମେ କାହିଁକି ଏତେ ସବୁ ରାଜନୀତିରେ- ମୁଣ୍ଡ ପୂରଉଛ କହିଲ ? ତମେ ଭଲ, ମୁଁ ଭଲ, ଆମର ଏ ଛୋଟ ପରିବାର ଭଲ... ।

Digitized by srujanika@gmail.com

ରୁପା : ରଖ ହୋ ତମର ଛୋଟ ପରିବାର । ମୁଁ ଆମ ସଂଘର ସଂପାଦିକାଟି । ଆଜିର ଖବରକାଗଜ ପଢ଼ିଲଣି ତ ? ଦେଖିବ- ମୋ ନାଆଁ, ମୋ ଭାଷଣର କି ପ୍ରଶଂସା ବାହାରିଛି । ହୁଁଃ ! ଆଉ ତମ ମାୟାରେ ବାୟା ହେଇ ମୁଁ ପୁଣି ଭୁଲ୍ କରି ବସିବି ? ମୁଁ ସଂପାଦିକାଟି । ମୋ ନାକ ନିଶ ତଳେ ପଡ଼ିଯିବନି ?

ବିନୟ : ତମେ ନାକ ତଳେ ନିଶ ଥିଲେ ସିନା ତଳେ ପଡ଼ନ୍ତା । ହେଲେ ତମର ଏ କାଣ୍ଡ କାରଖାନାରେ ମୋ ନାକନିଶ ତଳେ ପଡ଼ି- ଗଡ଼ି ସଡ଼ି ଛତୁ ଫୁଟିଯିବ । ରୁପା ! ଏ ବୁଦ୍ଧି ଛାଡ଼ ରୁପା !

ରୁପା କାହିଁକି ଏତେ ସାକୁଲେଇ ହଉଚ କହିଲ ? (ଘଣ୍ଟା ଦେଖି) ଆରେ ବାପ୍‌ରେ । ୮ଟା ବାଜିଗଲାଣି ମୁଁ ଚାଲିଲି । ଏଇ ତାଲିକାଟି ରଖ । ବଜାରରୁ ସବୁ ମଗେଇ ଆଣି ରୋଷେଇବାସ କରି ରଖିଥିବ ।

ବିନୟ (ତାଲିକା ଦେଖି) ଏଁ! କ'ଣ ରୁପା । ପୂରା ଭୋଜିର ତାଲିକା ।

ରୁପା ତମକୁ ଯାହା କହିଲି ସେଇଆ କର । ଆଜି ଆମ ସଂଘର member ମାନଙ୍କୁ- ମୁଁ ନିମନ୍ତ୍ରଣ କରିଛି । ସବୁ item ଯେମିତି ଭଲ ହୁଏ । ଆରେ ହଁ । ଘରଟା ଭଲଭାବେ ଝଡ଼ା ଝଡ଼ି କରି ସଜେଇଦବ । ବାପି ଆଉ ମାମୁନିକୁ ଗାଧୁଆ ପାଧୁଆ କରେଇ ଭଲ dress ପିନ୍ଧେଇ ଦେଇଥିବ । ଠିକ୍ ବାରଟା ବେଳକୁ ଆମେ lunch ଖାଇବୁ । ବୁଝିଲ ତ ?

ବିନୟ ବୁଝିଲି ! ସବୁ ବୁଝିଗଲି !

ରୁପା ହଁ, ଜଳଖିଆ ତିଆରି କରି ନିଜେ ଖାଇବ ଆଉ ଛୁଆଙ୍କୁ ଖାଇବାକୁ ଦେବ । ମୁଁ ଚାଲିଲି... । (ଚାଲିଯାଇଛନ୍ତି)

ବିନୟ ସତରେ ଚାଲିଗଲ ରୁପା । ମୁଁ ଏବେ କ'ଣ କରିବି ? ବାହା ନ ହେଇ ବାବନାଭୂତ ହେଇ ବୁଲିଥିଲେ- ବରଂ ଭଲ ହୋଇଥାନ୍ତା । ନ ହେଲେ, ଛୋଟୀ, କେମ୍ପୀ, କାଣୀ କି କୁଜୀଟିଏ ବାହା ହେଇଥିଲେ, ଆଜି ଏ ସଂକଟ ପଡ଼ିନଥାନ୍ତା । ହାଏରେ ବିଧାତା !

Digitized by srujanika@gmail.com

ଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓ

(କାନ୍ଥ ଘଣ୍ଟାରେ ନ'ଟା ବାଜିବାର ସୂଚନା)

ଏଁ ନଅଟା ବାଜିଗଲା । ଆରେ ବାପି । ବ୍ୟାଗଟା ଶୀଘ୍ର ଆଣିଲୁ ବାପା । ମୁଁ ବଜାରରୁ ଆସେ । (ଅନ୍ଧାର)

## ॥ ତୃତୀୟ ଦୃଶ୍ୟ ॥

(ଅଫିସ୍! ବଡ଼ବାବୁ ଓ ଆଉ ୩/୪ ଜଣ କର୍ମଚାରୀ କାର୍ଯ୍ୟବ୍ୟସ୍ତ । ତରବର ହୋଇ ପହଞ୍ଚିଛନ୍ତି ବଡ଼ବାବୁ ।)

ବିଜୟ : ନମସ୍କାର ବଡ଼ବାବୁ ।

ବଡ଼ବାବୁ : ନମସ୍କାର! ନମସ୍କାର! ବିନୟବାବୁ ଆପଣଙ୍କର ଆଜି ବହୁତ late ଯେ ।

ବିନୟ (ଥଙ୍ଗ ଥଙ୍ଗ ସ୍ୱରରେ) ଏଇ ନାଇଁ... ଏମିତି ଟିକେ ଡେରି ହେଇଗଲା ।

ବଡ଼ବାବୁ : ସେ କଥା ନୁହେଁ ଯେ! ଆପଣ ବହୁତ Punctual ତ ସେଇଥିପାଇଁ ପଚାରିଦେଲି । ନା, କ'ଣ ଦିବାକରବାବୁ ?

ଦିବାକର : ହଁ ଆଜ୍ଞା! ବିନୟବାବୁ ସମୟ ସାଥୀରେ ପାଦ ମିଳେଇ ଚାଲିବା ଲୋକ । ସତରେ ଆପଣଙ୍କର ଆଜି ଏତେ ଡେରି କାହିଁକି ? କ'ଣ ହେଲା କି ?

ବିନୟ ନାଇଁ ଯେ! ମିସେସ୍‌ଙ୍କ ଦେହ ଅସୁସ୍ଥ ତ! ସେଇଥିପାଇଁ ଘରର ସବୁକାମ କରିବାକୁ ପଡ଼ିଲା । ତାଙ୍କୁ ମେଡ଼ିକାଲ୍ ନେବା ଆଣିବା କରିବାରେ, ଟିକେ ବିଳମ୍ବ ହେଇଗଲା ।

ମହେନ୍ଦ୍ର ଏଁ ! ଆପଣଙ୍କ ମିସେସ୍ ଅସୁସ୍ଥ । ସତରେ ନା କ'ଣ ?

ବଡ଼ବାବୁ : ହଁ ହେଇଥିବ, ହେଇଥିବ । ରୋଗ ଗୋଟିଏ ଏମିତି ଜିନିଷ ଯେ, ସେ ଏମିତି ବିନା notice ରେ, ଅଚାନକ ଓ ଅଯାଚିତ ଅତିଥି ଭଳି ହାବୁଡ଼ିଯିବ ଯେ, ମଣିଷ ଏକବାରେ ନାକେଦମ୍ । ଏଇ ଯେମିତି ଆଜି ଆମ ମିସେସ୍ ।

ଦିବାକର : (ଆଗ୍ରହରେ କଥା ଛଡ଼େଇ) ଆପଣଙ୍କ ମିସେସ୍‌ଙ୍କର କ'ଣ ହେଲାକି ଆଜ୍ଞା ?

Digitized by srujanika@gmail.com

ବଡ଼ବାବୁ : (ଇତସ୍ତତଃ ହୋଇ) କିଛି ନାଇଁ । ମାନେ- ସକାଳୁ ଆଜି ସକାଳୁ ଉଠି ମିସେସ୍ ଦାନ୍ତ ଘଷୁଥିଲେ । ହଠାତ୍ କିଛି ନାହିଁ senseless ହୋଇ ତଳେ ପଡ଼ିଗଲେ ।

ମହେନ୍ଦ୍ର ସତେ ? ତା'ପରେ...

ବଡ଼ବାବୁ : ତା'ପରେ ଆଉ କ'ଣ ? ଆମ private doctor ଙ୍କୁ ଡକେଇ । ତାଙ୍କୁ treatment କରେଇଲି । ଡାକ୍ତର କହିଲେ B.P ବଢ଼ିଯାଇଛି । ବର୍ତ୍ତମାନ ତାଙ୍କର ୧୫ ଦିନ bed rest ଦରକାର । କ'ଣ କରିବି ? ହେଁଃ... ହେଁଃ (ହସି) ବିନୟବାବୁଙ୍କ ଭଳି ମତେ ଘରର ସବୁକାମ କରିବାକୁ ପଡ଼ିଲା । ଏଇ ଦେଖୁନ । ଏଥିପାଇଁ tiffin ଆଣିପାରିନି । ବିଜୟବାବୁ ତ tiffin ଆଣିପାରି ନଥିବେ । କ'ଣ କରିବା ? ଆଜି ମହେନ୍ଦ୍ରବାବୁ ଆଉ ଦିବାକରବାବୁଙ୍କ ସାଥିରେ ଭାଗ ବସିବା । ନା, କ'ଣ କହୁଛନ୍ତି ବିନୟବାବୁ ?

ବିନୟ ହଁ ଆଜ୍ଞା !

ମହେନ୍ଦ୍ର (ଦାନ୍ତ ନିକୁଟି ହସିଛନ୍ତି) ଆପଣ ଯାହା କହୁଛନ୍ତି ତାହା ଠିକ୍ ଯେ... ହେଲେ...

ବିନୟ ଏଥିରେ ପୁଣି ହେଲେ ଗୋଟାଏ କ'ଣ ? ଆପଣ ଯାହା ଆଣିଥିବେ, ସେତିକିରେ ଚଳେଇ ନବାନି ।

ମହେନ୍ଦ୍ର ମୁଁ ପରା ସେଇକଥା କହୁଛି । ମୁଁ ବି ଆଜି କିଛି ଆଣିପାରିନି । କାଲି ରାତିରୁ ଆମଘରେ ୬/୭ ଜଣ Guest ପହଞ୍ଚିଯାଇଛନ୍ତି । ସକାଳୁ ଏତେ ଜଣଙ୍କ ପାଇଁ ରୋଷେଇବାସ କରୁ କରୁ, ମିସେସ୍‌ଙ୍କୁ ସମୟ ହେଲାନି ଆଜ୍ଞା । ସିଏ କିନ୍ତୁ ଭାରି ବ୍ୟସ୍ତ ହେଲେ । ମୁଁ Office ରେ କ'ଣ ଖାଇବି ? କ'ଣ କରିବି ? ମୁଁ କିନ୍ତୁ ତାଙ୍କୁ ବୁଝେଇଦେଲି...

ବଡ଼ବାବୁ : ଆଉ ଦିବାକରବାବୁ ?

ଦିବାକର : (ସଂକୋଚରେ) କହିବାକୁ ଆଜ୍ଞା ଖରାପ ଲାଗୁଚି । ହେଲେ ନ କହି ରହିପାରୁନି । ସକାଳୁ ଆଜ୍ଞା gas ଟା ସରିଗଲା । ବଡ଼ କଷ୍ଟରେ

Digitized by srujanika@gmail.com

କ୍ଷୋଭରେ ଡାଲମା, ଭାତ ଟିକେ ହେଇପାରିଲା । ଜଳଖିଆ ତିଆରି କରିବା ସମ୍ଭବ ହେଲାନି । ମୁଁ ଭାବିଥିଲି, ଆଜି ଦିନଟା ଆପଣମାନଙ୍କ ସହିତ ଚଳେଇନେବି, ହେଲେ...

ବଡ଼ବାବୁ : ଧେତ୍‌ତେରିକା । ସମସ୍ତଙ୍କର ସବୁ ଅସୁବିଧା ଆଜି ହବାକୁ ଥିଲା ? (ଘଣ୍ଟା ଦେଖି) ଏଁ, ସାଢ଼େ ବାରଟା ବାଜିଗଲାଣି । ଏ ପର୍ଯ୍ୟନ୍ତ କିଛି Office କାମ ହେଇ ପାରିଲିନି । ଘରଜଞ୍ଜାଳ ମୁଣ୍ଡରେ ପଶି ମଣିଷକୁ ଅକାମି କରି ଦେଲାଣି ହୋ ! ଆରେ ସେ ବଇଁଶୀଟା କୁଆଡ଼େ ଗଲା ? ବଇଁଶୀ, ଏ ବଇଁଶୀ ! ଆରେ ଗଲୁ ୫ କପ୍ ଚା’ ନେଇଆସିବୁ ।

ବିନୟ : ଆଉ ସିଗାରେଟ୍ ୫ଟା ବି ନେଇଆସିବୁ ।

ବଡ଼ବାବୁ : ଏଣିକି ସମସ୍ତେ ସ୍ୱସ୍ଥାନକୁ ଯାଇ, ଫାଇଲ୍ ଚଷିବା ଆରମ୍ଭ କରିଦିଅ । ଦେଖୁନ, ହାକିମଙ୍କ ଆସିବାବେଳ ହେଇଗଲାଣି ଯେ...
(ସମସ୍ତେ ନିଜ ନିଜ seat କୁ ଯାଇଛନ୍ତି । Type କରିବା ଇତ୍ୟାଦି office କାର୍ଯ୍ୟବ୍ୟସ୍ତତାର effect)

– ଅନ୍ଧାର –

## ॥ ଚତୁର୍ଥ ଦୃଶ୍ୟ ॥

(Office କୁ ପୂର୍ବଭଳି ବିନୟବାବୁ late ରେ ଆସିଛନ୍ତି ତାଙ୍କୁ ଦେଖି ଅନ୍ୟମାନେ ଖୁବ୍ ଗମ୍ଭୀର ହୋଇଯାଇଛନ୍ତି)

ବିନୟ (ବଡ଼ବାବୁଙ୍କୁ) ଆଜ୍ଞା ନମସ୍କାର !

ବଡ଼ବାବୁ : (ଗମ୍ଭୀର ହୋଇ) ହୁଁ ! ନମସ୍କାର ।

ବିନୟ (ନିଜ seat ରେ ବସି) ଓହୋ ! ଆଜି ବି ପୁଣି ମୋର late ହେଇଗଲା । ମିସେସ୍‌ଙ୍କ ଦେହ କେବେ ଯେ ଭଲ ହେବ ? ଘର ଜଞ୍ଜାଳକୁ ଏଣେ office ଜଞ୍ଜାଳ । ମଣିଷ ସତରେ ଗୋଟେ machine ପାଲଟିଯିବ । ଉଃ... ।
(କିଛିକ୍ଷଣ ନୀରବ ରହିଲେ । ତାଙ୍କୁ କେହି କିଛି କହିଲେନି)

Digitized by srujanika@gmail.com

ବିନୟ (ଟିକେ ଚାପା ଗଳାରେ) ଆରେ ଦିବାକରବାବୁ! ମହେନ୍ଦ୍ରବାବୁ! କ'ଣ ହେଇଚି ? ସମସ୍ତେ କ'ଣ ଏତେ ଚୁପ୍‌ଚାପ୍ ? ଏତେ ଗମ୍ଭୀର ! କ'ଣ office ରେ କିଛି ଗଣ୍ଡଗୋଳ ହେଇଯାଇଛି ନା କ'ଣ ?

ଦିବାକର : (ଥଟ୍ଟାରେ) ହୁଁଃ... କ'ଣ ହେଇଛି କିଛି ଜାଣିନାହାନ୍ତି ? କରି କରାଉ ଥାଏ ମୁହିଁ; ମୋ ବିନୁ ଅନ୍ୟ ଗତି ନାହିଁ । ହୁଁଃ... ।

ବଡ଼ବାବୁ : Mind your own business ଦିବାକରବାବୁ । ନିଜ ଭୁଲ୍‌ଟା କ'ଣ ନିଜକୁ କେବେ ଦିଶେ ?

ବିନୟ କ'ଣ ଯେ ଆପଣମାନେ କହୁଛନ୍ତି । ମୁଁ କିଛି ବୁଝିପାରୁନି ବଡ଼ବାବୁ । ମୁଁ ତ କାହାର କିଛି କ୍ଷତି କରିନି କି କ୍ଷତି ହେବାଭଳି କୌଣସି ଭୁଲ୍ ମଧ କରିନି । ମତେ ସବୁକଥା ଖୋଲି କହୁନାହାନ୍ତି କାହିଁକି ?

ମହେନ୍ଦ୍ର (ତାଚ୍ଛଲ୍ୟରେ) ବଡ଼ବାବୁ । ବିନୟବାବୁଙ୍କୁ ଟିକେ ସବୁ ଖୋଲାଖୋଲି ବୁଝେଇ ଦଉନାହାନ୍ତି । ସିଏ କିଛି ବୁଝି ପାରୁନାହାନ୍ତି ପରା... ।

ବଡ଼ବାବୁ : ସବୁ ଜାଣି ଏମିତି ନ ଜାଣିବାର ଛଳନା କାହିଁକି କରୁଛନ୍ତି କହିଲେ ? ଆପଣଙ୍କ ମିସେସ୍‌ଙ୍କ ଦେହ ଖରାପ ? ତାଙ୍କ ଅବସ୍ଥା ଖୁବ୍ serious ନା ? (ଖବରକାଗଜଟା ଫୋପାଡ଼ି ଦେଇ) ଏଇ ଦେଖନ୍ତୁ । ଏ ଖବରକାଗଜରେ ଆପଣଙ୍କ ମିସେସ୍‌ଙ୍କ ବିଷୟରେ ଯାହା ବାହାରିଛି, ଏସବୁ କ'ଣ ଆପଣ ଜାଣନ୍ତିନି ?

ଦିବାକର : ଆଉ ଆପଣଙ୍କ ମିସେସ୍‌ଙ୍କ ନେତୃତ୍ୱରେ, ଯେଉଁ ନାରୀ ଅସହଯୋଗ ଆନ୍ଦୋଳନ ଚାଲିଛି । ତା' ବି ଆପଣ ଜାଣନ୍ତିନି ?

ମହେନ୍ଦ୍ର କ'ଣ ବା ନାରୀ ପ୍ରଗତି ହଉଛି ? ଏଇଟା କ'ଣ ପ୍ରଗତି ? ଏଇଟା କ'ଣ ଆଧୁନିକତା ? ଆପଣଙ୍କ ମିସେସ୍‌ଙ୍କ ଲାଗି, ପ୍ରଗତିଶୀଳା ମହିଳାମାନେ- ନିଜ ପରିବାର ଭିତରେ ଯେଉଁ ଦୁର୍ଗତି ସୃଷ୍ଟି କରୁଛନ୍ତି- ସେଥିପାଇଁ ଦାୟୀ କେବଳ ଆପଣଙ୍କ ମିସେସ୍ । ବୁଝିଲେ ?

ବଡ଼ବାବୁ : କି ଦୁର୍ବୁଦ୍ଧି ସମସ୍ତଙ୍କ ମୁଣ୍ଡରେ ପଶିଛି କେଜାଣି । ସବୁବେଳେ ଖାଲି ମିଟିଂ । ସବୁବେଳେ ଖାଲି ସଭାସମିତି । ଏଣେ ଘରେ ଆମ ଭଳି

Digitized by srujanika@gmail.com

ଭଦ୍ର ପୁରୁଷଗୁଡ଼ା- ଏକଦମ୍ ଭକୁଆ ପାଲଟିଗଲେଣି ହୋ । ଛୁଆମାନେ ବି ମାଆର ଯତ୍ନ ଅଭାବରୁ କି ହନ୍ତସନ୍ତ ହେଉଛନ୍ତି । ସତରେ ବିନୟବାବୁ, ଆପଣଙ୍କ ଭଳି ଭଦ୍ର- ଅମାୟିକ ସରଳ ବ୍ୟକ୍ତିଙ୍କ ପତ୍ନୀ ଯେ ଏଭଳି ଉଗ୍ରବାଦୀ, ଏକଥା କେହି ବିଶ୍ୱାସ କରିବେନି ।

ବିନୟ (ଲଜ୍ଜା ଓ ଦୁଃଖରେ) ବଡ଼ବାବୁ! ମୁଁ ଜାଣିଥିଲି ଦିନେନା ଦିନେ ସମସ୍ତେ ଏକଥା ନିଶ୍ଚୟ ଜାଣିବେ । ଅଜାଗା ଘା' ଆଜ୍ଞା । ଦେଖି କି ଦେଖେଇ ହଉନି ମୋର ବା ଏଥିରେ ଦୋଷ କ'ଣ ଆଜ୍ଞା ?

ଦିବାକର : ବିନୟବାବୁ! ଆପଣ କିଛି ବୁଝୁନାହାନ୍ତି ! ଏଇଭଳି ଯଦି ଅସହଯୋଗ ଚାଲେନା, ଆଉ କିଛି ଦିନ ପରେ ଖାଲି ଆମ ଏଇ ସହରରେ କାହିଁକି, ସାରା ଦେଶରେ ସଂକ୍ରାମକ ରୋଗଭଳି ଏ ଆନ୍ଦୋଳନଟା ବ୍ୟାପିଯିବ । ଆଉ ତା'ପରେ କ'ଣ ହେବ ଜାଣନ୍ତି ? ତା'ପରେ ଆମ ଏ ସର୍ବଂସହା ପୁରୁଷସମାଜ, ଶାଢ଼ି ଚୁଡ଼ି ପିନ୍ଧି- ଘରକୋଣକୁ ଆଦରିନେବେ । ନହେଲେ, ଲୋଟା କୌପୁନି ଧରି ହିମାଳୟ ଦର୍ଶନରେ ବାହାରିଯିବାକୁ ପଡ଼ିବ ।

ମହେନ୍ଦ୍ର ଏହାର କ'ଣ କିଛି ପ୍ରତିକାର କି ପ୍ରତିଷେଧକ ବ୍ୟବସ୍ଥା ନାହିଁ ଆଜ୍ଞା ? ଦିବାକରବାବୁଙ୍କ ଭବିଷ୍ୟତ ବାଣୀ କ'ଣ ସତରେ ସତ୍ୟ ହେବ ?

ବିନୟ : ସତରେ ଆଜ୍ଞା ! ଏମିତି ଝାମେଲାରେ ସମୟ କଟୁଛି ଯେ, କିଛି କହିହେଉନି କି ସହିହେଉନି ! ମୋ ମୁଣ୍ଡରେ କିଛି ବୁଦ୍ଧି ଜୁଟୁନି ଆଜ୍ଞା !

ବଡ଼ବାବୁ : (ଗମ୍ଭୀର କଣ୍ଠରେ) ମୋ ମୁଣ୍ଡରେ କିନ୍ତୁ ଗୋଟିଏ ବଢ଼ିଆ idea ଜୁଟିଛି ।

ବିନୟ (ଆଗ୍ରହରେ) କ'ଣ ଆଜ୍ଞା ?

ବଡ଼ବାବୁ : ଶଠଂ ଶାଠ୍ୟଂ ସମାଚରେତ୍ । ଅର୍ଥାତ୍ ଯେସାକୁ ତେସା ନ ହେଲେ ଆମେ ହାରିଯିବା ।

ମହେନ୍ଦ୍ର ବଡ଼ବାବୁ ! ଆଉ ଡେରି ନ କରି, ଫଟାଫଟ୍ Idea ଟାକୁ ଆଲୋକକୁ ଆଣନ୍ତୁ । ମଣିଷ ଭଲରେ ଗଣ୍ଡେ ଖାଇପାରୁନି କି ଶୋଇପାରୁନି ହୋ ।

Digitized by srujanika@gmail.com

ବଡ଼ବାବୁ : ଚୁପ୍ ! ମତେ ଆଉ ଟିକେ ଗମ୍ଭୀରଭାବେ ଚିନ୍ତା କରିବାକୁ ଦିଅ ।

ଦିବାକର : କରନ୍ତୁ ଆଜ୍ଞା ! ଖାଲି ଗଭୀର କ'ଣ, ଗଭୀରତର, ଗଭୀରତମ ଭାବରେ ଚିନ୍ତା କରନ୍ତୁ । ଏଇ ଆମେ ସବୁ ପାଟି ବନ୍ଦ୍ କରି ବସି ରହିଲୁ । କିନ୍ତୁ ଆଜ୍ଞା, ଯଥା ଶୀଘ୍ର ଉପାୟଟା ବତାଇ ଆମ ମନକୁ ହାଲୁକା କରି ଦିଅନ୍ତୁ ।

ବଡ଼ବାବୁ : (ହସି) ଦିବାକରବାବୁ ! ଆପଣ କ'ଣ ଯେ କହନ୍ତି ? ଏଇଟା ପରା Office । ଏଠି ଘରୋଇ ସମସ୍ୟାର ସମାଧାନ କରିବସିଲେ- Office ସମସ୍ୟା କିଏ ସମ୍ଭାଳିବ ଆଜ୍ଞା ?

ବିନୟ କ'ଣ କରିବୁ ଆଜ୍ଞା । ମୁଣ୍ଡଟା ପୂରା ଫାଙ୍କା ହେଇଗଲାଣି । ଫାଇଲକୁ ଅନେଇଲେ ଖାଲି ରୋଷେଇଘର, ହାଣ୍ଡି ଚୁଲୀ ଦେଖାଯାଉଛି... ।

ବଡ଼ବାବୁ : ଆହା ! ମୋଟେ ବ୍ୟସ୍ତ ହୁଅନ୍ତିନି ! ଆଜି lunch hour ରେ ଏ ବିଷୟରେ ଆଲୋଚନା କରିବା । କିନ୍ତୁ ମୋ କଥାକୁ ଯେମିତି ସମସ୍ତେ ପାଳନ କର ।

ମହେନ୍ଦ୍ର (ଘଣ୍ଟା ଦେଖି) ଓଃ ଆହୁରି ଘଣ୍ଟାଏ wait କରିବାକୁ ହେବ ? ମୋର କିନ୍ତୁ ଆଉ ଧୈର୍ଯ୍ୟ ରହୁନି ।

ବଡ଼ବାବୁ : Don't be horry ମହେନ୍ଦ୍ରବାବୁ ! ସମସ୍ତେ ସୁନାପିଲା ପରି- ଏଣିକି office କାମରେ ମନ ଦିଅ । କହିଲିତ । ଆଜି କିଛି ଗୋଟାଏ ସମାଧାନ ନିଶ୍ଚୟ କରିବା ।

(Office କାର୍ଯ୍ୟବ୍ୟସ୍ତତାର Effect ଅନ୍ଧାର ।)

## ।। ଶେଷ ଦୃଶ୍ୟ ।।

(ରବିବାର । ସମୟ ସକାଳ)

ରୂପବାଳା : (ହାଇମାରି ଅଳସ କଣ୍ଠରେ) ଓହୋ ! ସକାଳ ସାତଟା ବାଜିଗଲାଣି । ଏ ପର୍ଯ୍ୟନ୍ତ ଚା' କପେ ମିଳିଲାନି । କୁଆଡ଼େ ଗଲେ କି ? ଆରେ ଶୁଣୁଛ ? (ଟିକେରହି) କ'ଣ କାହାରି ସୋର୍ ଶବ୍ଦ ଶୁଭୁନି ?

Digitized by srujanika@gmail.com

(ବଡ଼ପାଟିରେ) କ'ଣ ତମକୁ ଶୁଭୁଚି ନା ନାହିଁ ମ ? କାନରେ କ'ଣ ଠିପି ଦେଇଛ କି ? ଆଜି ରବିବାର ବୋଲି କ'ଣ ଖିଆଲ ନାହିଁ କି ? (ସ୍ୱଗତୋକ୍ତି) ସକାଳୁ ସକାଳୁ ଚା'କପେ ନ ଖାଇଲେ ମୁଣ୍ଡଟା ଟଣ୍ ଟଣ୍ ହେଇ ବିନ୍ଧିଉଠୁଛି । (ଟିକେ ପରେ) ମଲା ମୋର ! କୁଆଡ଼େ ଗଲେ କି ଆଉ । ଦେଖେ (ଡାକି ଡାକି) କ'ଣ କରୁଛ ଶୁଣେ ? ଡାକିଲେ ଜବାବ୍ ଦଉନା ଯେ ! (ଭିତରୁ) କାହିଁ ! ଏଠି ତ ନାହାନ୍ତି । ବାଥ୍‌ରୁମ୍ ପାଇଖାନା ବି ଖୋଲା । ସକାଳୁ ସକାଳୁ କୁଆଡ଼େ ଗଲେକି ଆଉ ? ଦାଣ୍ଡଘରେ ଶୋଇପଡ଼ିନାହାନ୍ତି ତ ! ଅଳସୁଆ ଠାପୁଆ ତ ! ଏଁ, ଆଲୋ ଆଲୋ, ଦାଣ୍ଡ କବାଟଟା କ'ଣ ଠିଆ ମୁକୁଳା । କେହି କୁଆଡ଼େ ନାହିଁ । ଏଁ, ଆଲୋ ଆଲୋ । ଟେବୁଲ୍ ଉପରେ ଏଇଟା କ'ଣ ? ଚିଠି ଟା ! ଦେଖେ କି ଚିଠି । (ଚିଠି ଖୋଲିଛନ୍ତି) ।

ରୂପବାଳା ! (ବିନୟର voice) ମୁଁ ଜାଣେ । ବିଛଣାରୁ ଉଠି ସକାଳୁ ସକାଳୁ, ମତେ ଅନେକ ଗାଳିଦେବ । ଦିଅ ମନଇଚ୍ଛା ଗାଳିଦିଅ । ମୁଁ କିନ୍ତୁ ଶୁଣିବାକୁ ନଥିବି । ଦୀର୍ଘ ତିନିମାସ ଧରି, ତମର ଅସହଯୋଗ ଆନ୍ଦୋଳନରେ ମୁଁ ବହୁତ ସହିଛି । ଆଉ ଯନ୍ତଣା ବି ଭୋଗିଛି । ଏଣୁ ମୋରି ଭଳି ନିଷ୍ପେଷିତ ପୁରୁଷମାନେ, ଗୋଟିଏ ସଂଘ ଗଢ଼ିଛୁ । ଆମର ଏହି ସଂଘର ନିୟମ ଅନୁସାରେ- ଅସହଯୋଗୀ ନାରୀଙ୍କର ଆଁମେ ଛାଇ ସୁଦ୍ଧା ସ୍ପର୍ଶ କରିବୁ ନାହିଁ । ନାରୀମାନେ ଯେମିତି ଆମକୁ ସାହାଯ୍ୟ ସହଯୋଗ କରୁନାହାନ୍ତି, ଆମେ ସେମିତି ଘରେ, ବାହାରେ ପ୍ରତ୍ୟେକ କ୍ଷେତ୍ରରେ ନାରୀମାନଙ୍କ ସହିତ ଅସହଯୋଗ କରିବୁ । ରୁପା ! ତମକୁ ବାହାହେବାରୁ ସିନା ମୁଁ ଅଲଗା ଘରଟିଏ କଲି । ତମକୁ ବାହା ହେବାରୁ ସିନା ପିଲାଛୁଆ ହେଲେ- ନାରୀପ୍ରଗତି ନାରୀ ସ୍ୱାଧୀନତା ନାମରେ, ତମେ ସେ ଘରସଂସାରକୁ ଉଜାଡ଼ି ଦଉଛ । ତମେ ଯଦି ମତେ ଛାଡ଼ି ରହିପାରିବ । ମୁଁ କାହିଁକି ପାରିବିନି ? ଘରେ ରହିଲେ ସିନା, ଅସହଯୋଗ ନିଆଁରେ ପୋଡ଼ି ମରିବି । ତେଣୁ ବାଧ ହୋଇ, ଘର ଛାଡ଼ିବାର ସିଦ୍ଧାନ୍ତ ନେଲି । ଆଜିଠାରୁ ଏ ଘର ତମର-

Digitized by srujanika@gmail.com

ଏ ଘରର ସବୁକିଛି ତମର । ଏଣିକି ତମେ ନିଶ୍ଚିନ୍ତରେ ରହିପାରିବ । ନିର୍ଦ୍ୱନ୍ଦରେ ସମାଜସେବା କରିପାରିବ । ଆଉ ତମ ସଂଘ ଜରିଆରେ-ନାରୀ ଦୁର୍ଗତି ବି ହରଣ କରିପାରିବ । ଆଶା, ମୋତେ ଭୁଲିଯିବ । (ଇତି) ତମର ସ୍ୱାମୀ ବିନୟ

ରୁପା ଏଁ... (କାନ୍ଦିଛି) ତମେ... ତମେ ମତେ ଛାଡ଼ି ଚାଲିଗଲ । ସତରେ ତମେ... ମତେ ଛାଡ଼ି ଯାଇପାରିଲ ? ମୁଁ କେମିତି ଏକୁଟିଆ ଏ ଘରେ ରହିବି ଯେ । ପିଲାଛୁଆ କେମିତି ମଣିଷ ହେବେ ? ତମ ଛଡ଼ା ଏ ଦୁନିଆରେ ନିଜର ବୋଲି କିଏ ଅଛି ଯେ... କାହାକୁ ମୋ ଦୁଃଖ କହିବି ! (Pause) ମୁଁ ନିଆଁନାଗୀ ଏଥିପାଇଁ, ସବୁ ଦୋଷ ମୋର ! ସବୁ ଭୁଲ୍ ମୋର । କାହିଁକି ମୁଁ ସଂଘରେ ମାତିଲି କେଜାଣି ? କି ଦୁର୍ବୁଦ୍ଧି ମତେ ଦିଶିଲା ଲୋ ! ଦେବତାଭଳିଆ ସ୍ୱାମୀଙ୍କି କେତେ କଷ୍ଟ ଦେଲି । ସୁନାସଂସାରକୁ ଛାରଖାର କରିଦେଲି । ଏ ପୋଡ଼ାମୁହଁ କାହାକୁ ଆଉ ଦେଖେଇବି । ମତେ ଯା' ମରଣ ହେଲାନି । ଯାଉଚି ବିଷଖାଇ ଦେବି । ନ ହେଲେ ଦଉଡ଼ି ଦେଇଦେବି । (କାନ୍ଦୁଥାନ୍ତି) (ଶିପ୍ରା ଓ ଲତା ଆସିଛନ୍ତି)

ଶିପ୍ରା ରୁପାଅପା ! ରୁପାଅପା ! ତମେ କାନ୍ଦୁଛ କାହିଁକି ?

ଲତା କ'ଣ ହେଇଚି ରୁପାଅପା ! କାହିଁକି କାନ୍ଦୁଛ ?

ରୁପା ମୋ ଘରସଂସାର ଉଜୁଡ଼ିଗଲା ଲୋ ଶିପ୍ରା ! କୁମ୍ଭୀର ନେଇ ମଝି ନଈରେ କଲାଣି ଲୋ ଲତା ! ସିଏ ଘରଛାଡ଼ି ଚାଲିଯାଇଛନ୍ତି । ମୁଁ କ'ଣ କରିବି କହ ? ଅପଦଶିଆ ସଂଘ ମାୟାରେ, ମୁଁ କାହିଁକି ବାୟା ହେଲିଲୋ... (କାନ୍ଦୁଥାନ୍ତି)

ଲତା କ'ଣ କହୁଛ ଅପା ? ବିନୟବାବୁ ଘରଛାଡ଼ି...

ରୁପା (କାନ୍ଦି) ମୁଁ କ'ଣ ମିଛ କହୁଚି ? ଏଇ ଦେଖୁନୁ, ଚିଠିଟା ଦେଖ । କ'ଣ ଲେଖା ହେଇଚି ପଢ଼... ।

(ଲତା ଓ ଶିପ୍ରା ଚିଠି ପଢ଼ିଛନ୍ତି ଓ କହିଛନ୍ତି) ଏଁ । ବିନୟବାବୁ ବି...

Digitized by srujanika@gmail.com

ଶିପ୍ରା (କାନ୍ଦି) ଏମିତିକା ଚିଠି ଖଣ୍ଡେ ଖଣ୍ଡେ ପାଇ, ଆମେ ତମପାଖକୁ ଧାଇଁ ଆସିଥିଲୁ । କି ଯୋଗରେ ଆଜି ରାତି ପାହିଥିଲା କେଜାଣି ?

ଲତା (କାନ୍ଦି) ଆମ ଘରସଂସାର ଉଜୁଡ଼ିଗଲା । ସକାଳୁ ସକାଳୁ ସମସ୍ତେ, ଏଇ ଗୋଟିଏ ପ୍ରକାର ଚିଠି ପାଇ ତମ ପାଖରେ ପହଞ୍ଚିଲୁ । ତମେ ତ ସଂଘର ସଂପାଦିକା । ଆମକୁ ବୁଦ୍ଧି ବତେଇଦିଅ । ଆମେ ଏବେ କ'ଣ କରିବୁ ?

ରୁପା ଦେଖୁଚ ତ ! ମୋ ଘରବୁଡ଼ି ଆଣ୍ଠୁଏ ପାଣି ହେଲାଣି ! ମୁଁ ତମକୁ ପୁଣି କି ବୁଦ୍ଧି ଦେବି ?

ଶିପ୍ରା ତମରି ବୁଦ୍ଧିରେ ତ ଏ ସଂଘ ଖୋଲିଲୁ । ସଭ୍ୟା ହେଲୁ । ନାରୀ ପ୍ରଗତି ପାଇଁ ପ୍ରଚାର କଲୁ । ଘରସଂସାରକୁ ନଜର ଦେଲୁନି ।

ଲତା ହଁ, ରୁପାଅପା । ତମ କଥାରେ ଭାସିଯାଇ, ଆମେ ଅସହଯୋଗ ଆନ୍ଦୋଳନ କଲୁ । ଅଖ ଚକ ବନ୍ଦ କରି, ଘରର ଯାବତୀୟ କାମ ସ୍ୱାମୀମାନଙ୍କୁ କରେଇଲୁ । ତମରି ପାଇଁ କେବଳ ତମରି ପାଇଁ... ଆମ ସମସ୍ତଙ୍କ ସୁନାସଂସାର ଚୂନା ହେଲା । ଏବେ କହୁଚ କ'ଣ ନା ମୁଁ କ'ଣ କରିବି ?

ଶିପ୍ରା : ସତରେ ରୁପାଅପା ! କେତେ ସୁଖଶାନ୍ତିରେ ଆମେ ଥିଲୁ । ଏ ସମାଜସେବାରୁ ଆମକୁ କ'ଣ ମିଳିଲା ? ସେମାନେ କ'ଣ ଆମକୁ କୋଉ କଥାରେ ଆକଟ କରୁଥିଲେ । ଆମେ ଯଦି ଘର କାମରେ ତାଙ୍କ ସହିତ ସହଯୋଗ କରିଥାନ୍ତୁ ତା' ହେଲେ ଆଜି ଏ ସବୁ ଘଟିନଥାନ୍ତା । ହେଲେ, ତମେ ତ ଖାଲି ପୁରୁଷଙ୍କ ବିରୁଦ୍ଧରେ ଆମକୁ–ତତେଇଦେଲ, ମତେଇ ଦେଲ । ଏବେ ଆମ ଘର ସଂସାରକୁ ସମ୍ଭାଳିବ କିଏ ?

ରୁପା : ଆଲୋ ଶିପ୍ରା ! ଆଲୋ ଲତା ! ତମେମାନେ ଶେଷରେ ମତେ ଦୋଷୀ କଲ । ତମେମାନେ କ'ଣ ମତେ– ଏ ଭୁଲ୍ କାମ କରିବାରେ ସାହାଯ୍ୟ କରିନା ? ମୁଁ ସିନା ଅଧାପାଠୁଆ, ମୂର୍ଖ । ଭାବିଥିଲି ଏମିତି ଭଲକାମ କରି ନାଆଁ କରିବି । ସହରରେ ମତେ ସମସ୍ତେ ଜାଣିବ । ଇଜ୍ଜତ

Digitized by srujanika@gmail.com

କରିବେ । ସମାଜରେ ଭାରି ବଡ଼ ଜାଗା ପାଇବ । ଏଇ ନିଶା ମତେ ବାଟବଣା କଲା । ଆଉ ତମେମାନେ ପରା ପାଠୁଆ, ଉଚ୍ଚଶିକ୍ଷିତା । ମୋ ଭୁଲ୍ କଥାକୁ ତମେ କେମିତି- ଠିକ୍ ବୋଲି ମାନିନେଲ ? ମୁଁ କ'ଣ ଜାଣିଥିଲି- ସାରୁ ଭିତରେ ମାରୁ ଅଛି ବୋଲି ?

ଲତା (ରୁକ୍ଷ ସ୍ୱରରେ) କ'ଣ ହେଲା ? ଆମେ ତମକୁ ଭୁଲ୍ ବାଟରେ ଯିବାକୁ ସାହାଯ୍ୟ କଲୁ ? ନାଇଁ, ନାଇଁ, ଆମେ ତମକୁ ବାଟବଣା କଲୁ ?

ଶିପ୍ରା (କଟୂକ୍ତି କରି) ହଁ, କହିବେନି କାହିଁକି ? ସଂପାଦିକା ଆସନଟାକୁ ଜୋର୍ କରି ମାଡ଼ିବସିଲା ବେଳକୁ- ନିଜ ଶିକ୍ଷାଦୀକ୍ଷା ବିଷୟରେ କ'ଣ ଭାବି ନଥିଲ କି ?

ରୁପା ମଫସଲ ଗାଁର ସରଳ ଝିଅ ମୁଁ । ସହରକୁ ଆସି ଟିକେ ନାଆଁ କମେଇବାକୁ ଚାହିଁଥିଲି । ତମେମାନେ ମତେ ଫସେଇଦେଲ । ଆଉ ଏବେ, ମତେ ସମସ୍ତେ ଦୋଷୀ କରୁଚ ?

ଶିପ୍ରା ତମ କଥା ଶୁଣିବାକୁ, ଆମର ଆଉ ସମୟ ନାହିଁ, ବୁଝିଲ ? ଏଥର ଆମକୁ କ'ଣ କରିବାକୁ ହେବ କୁହ ?

ଲତା ନ ହେଲେ ସତ କହୁଚି, ଆମେ ସମସ୍ତେ ତମରି ଘରେ ଧାରଣା ଦବୁ । ତମେ ଆମର ଭଲମନ୍ଦ ପାଇଁ ଦାୟୀ ରହିବ ।

ରୁପା ଏଁ ! ଏମିତି କ'ଣ ସବୁ କହୁଚ ? ହଉହେଲା, ମୋର ସବୁ ଭୁଲ୍ । ସବୁ ଦୋଷ ମୋର । ସମସ୍ତଙ୍କୁ ତ ଏକା ଦଶା ପଡ଼ିଛି । ଏତେବେଳେ କଳିଝଗଡ଼ା ନ କରି, ଟିକେ ଚିନ୍ତା କର । କ'ଣ କରିବା ? କ'ଣ କଲେ ଆମ ସମସ୍ୟା ଦୂର ହେବ ?

ଶିପ୍ରା ମୋ ମୁଣ୍ଡରେ କିଛି ପଶୁନି । ତମେ ସବୁ ସମସ୍ୟାର ସୃଷ୍ଟିକର୍ତ୍ତା । ଏଣୁ ତମେ ହିଁ ଏହାର ସମାଧାନ କରିବ । ନ ହେଲେ ଆମେ ତୁମ ନାଆଁରେ case କରିବୁ ।

ରୁପା : ଏମିତି କ'ଣ କହୁଚୁଲୋ ଶିପ୍ରା ! ମୋ ଭୁଲ୍ ତ ମୁଁ ମାନିନେଇଚି । ହଁ, ମୁଁ ଭାବୁଛି- ଚାଲ ଆମେ ସମସ୍ତେ ଥାନାକୁ ଯିବା, ଏତାଲା

Digitized by srujanika@gmail.com

ଦେବା । ଦେଖିବା, ପୋଲିସ୍ ଯଦି ସେମାନଙ୍କୁ ଖୋଜିପାଏ...

ଲତା ଯାହା କରୁଛ ଶୀଘ୍ର କର । ମୋ ଛୁଆମାନେ ତେଣେ କ'ଣ ଯେ କରୁଥିବେ...

ରୁପା ଚାଲ ! ଶୀଘ୍ର ଚାଲ । ମୁଁ ଏମିତି ବାହାରି ପଡୁଚି ।

(ଯିବାକୁ ଉଦ୍ୟତ ହୋଇଛନ୍ତି । ମହେନ୍ଦ୍ର, ଦିବାକର, ବଡ଼ବାବୁ ଇତ୍ୟାଦି ପ୍ରବେଶ କରିଛନ୍ତି)

ମହେନ୍ଦ୍ର (ପ୍ରବେଶ) କେହି କୁଆଡ଼େ ଯିବା ଦରକାର ନାହିଁ । ଭାଉଜ ! ହଜିଲା ବଳଦ ପରା ଖୋଜିଲା ଠେଇଁ...

ରୁପା (ଆଶ୍ଚର୍ଯ୍ୟରେ) ଏଁ ? ଆପଣ ? ମହେନ୍ଦ୍ରବାବୁ...

ମହେନ୍ଦ୍ର ହଁ ମୁଁ ! (ହସି) ଆପଣ ଏମିତି ଆଶ୍ଚର୍ଯ୍ୟ ହେଇ ଅନେଇଛନ୍ତି କ'ଣ ?

ଶିପ୍ରା (କାନ୍ଦି) ତମେ... ତମେ ଚିଠି ଖଣ୍ଡେ ଲେଖିଦେଇ କୁଆଡ଼େ ଚାଲିଯାଇଥିଲ...

ମହେନ୍ଦ୍ର : ଆହା, ଶିପ୍ରା ! ତମେ କାନ୍ଦୁଚ କାହିଁକି ? ମୁଁ କ'ଣ ସତସତିକା ଚାଲିଯାଇଥିଲି ।

ରୁପା : ଆଉ ଅନ୍ୟମାନେ...

ମହେନ୍ଦ୍ର : ଆସିଛନ୍ତି । ସମସ୍ତେ ଆସିଛନ୍ତି । ଆରେ ବିନୟବାବୁ ! ଦିବାକରବାବୁ । ଏଥର ଗୃହପ୍ରବେଶ କରନ୍ତୁ । (ହସି) ବହୁତ ଦୁଃଖ ପାଇଲେଣି ନାରୀ ସେବିକାମାନେ !

(ହସି ହସି ଅନ୍ୟମାନଙ୍କର ପ୍ରବେଶ)

ବଡ଼ବାବୁ : କ'ଣ ଭଲଅଛନ୍ତି ତ ମିସେସ୍ ପଟ୍ଟନାୟକ ।

ରୁପା : (କିଛି ନ କହି ସୁଁ ସୁଁ ହୋଇ କାନ୍ଦିଚି)

ବିନୟ (ପାଖକୁ ଆସି) ରୁପା ! ଆରେ କାନ୍ଦୁଛ କାହିଁକି ? ତମକୁ କଷ୍ଟ ଦେଇଥିବାରୁ ସତରେ ମୁଁ ବହୁତ ଦୁଃଖିତ । ମତେ କ'ଣ କ୍ଷମା କରିବନି ?

ରୁପା (କାନ୍ଦି) ଥାଉ ! ଭୁଲ ମୁଁ କରିଛି ! ତମେ କ୍ଷମା ମାଗୁଛ । ଏଇ ଦେଖ, ତମ ଦେହ ଛୁଇଁ ଶପଥ କରୁଛି ଆଉ ସେ ସଂଘଫଙ୍ଗର

Digitized by srujanika@gmail.com

କରିବେ । ସମାଜରେ ଭାରି ବଡ଼ ଜାଗା ପାଇବ । ଏଇ ନିଶା ମତେ ବାଟବଣା କଲା । ଆଉ ତମେମାନେ ପରା ପାଠୁଆ, ଉଚ୍ଚଶିକ୍ଷିତା । ମୋ ଭୁଲ୍ କଥାକୁ ତମେ କେମିତି- ଠିକ୍ ବୋଲି ମାନିନେଲ ? ମୁଁ କ'ଣ ଜାଣିଥିଲି- ସାରୁ ଭିତରେ ମାରୁ ଅଛି ବୋଲି ?

ଲତା (ରୁକ୍ଷ ସ୍ୱରରେ) କ'ଣ ହେଲା ? ଆମେ ତମକୁ ଭୁଲ୍ ବାଟରେ ଯିବାକୁ ସାହାଯ୍ୟ କଲୁ ? ନାଇଁ, ନାଇଁ, ଆମେ ତମକୁ ବାଟବଣା କଲୁ ?

ଶିପ୍ରା (କଟୂକ୍ତି କରି) ହଁ, କହିବେନି କାହିଁକି ? ସଂପାଦିକା ଆସନଟାକୁ ଜୋର୍ କରି ମାଡ଼ିବସିଲା ବେଳକୁ- ନିଜ ଶିକ୍ଷାଦୀକ୍ଷା ବିଷୟରେ କ'ଣ ଭାବି ନଥିଲ କି ?

ରୁପା ମଫସଲ ଗାଁର ସରଳ ଝିଅ ମୁଁ । ସହରକୁ ଆସି ଟିକେ ନାଆଁ କମେଇବାକୁ ଚାହିଁଥିଲି । ତମେମାନେ ମତେ ଫସେଇଦେଲ । ଆଉ ଏବେ, ମତେ ସମସ୍ତେ ଦୋଷୀ କରୁଚ ?

ଶିପ୍ରା ତମ କଥା ଶୁଣିବାକୁ, ଆମର ଆଉ ସମୟ ନାହିଁ, ବୁଝିଲ ? ଏଥର ଆମକୁ କ'ଣ କରିବାକୁ ହେବ କୁହ ?

ଲତା ନ ହେଲେ ସତ କହୁଚି, ଆମେ ସମସ୍ତେ ତମରି ଘରେ ଧାରଣା ଦବୁ । ତମେ ଆମର ଭଲମନ୍ଦ ପାଇଁ ଦାୟୀ ରହିବ ।

ରୁପା ଏଁ ! ଏମିତି କ'ଣ ସବୁ କହୁଚ ? ହଉହେଲା, ମୋର ସବୁ ଭୁଲ୍ । ସବୁ ଦୋଷ ମୋର । ସମସ୍ତଙ୍କୁ ତ ଏକା ଦଶା ପଡ଼ିଛି । ଏତେବେଳେ କଳିଝଗଡ଼ା ନ କରି, ଟିକେ ଚିନ୍ତା କର । କ'ଣ କରିବା ? କ'ଣ କଲେ ଆମ ସମସ୍ୟା ଦୂର ହେବ ?

ଶିପ୍ରା : ମୋ ମୁଣ୍ଡରେ କିଛି ପଶୁନି । ତମେ ସବୁ ସମସ୍ୟାର ସୃଷ୍ଟିକର୍ତ୍ତା । ଏଣୁ ତମେ ହିଁ ଏହାର ସମାଧାନ କରିବ । ନ ହେଲେ ଆମେ ତୁମ ନାଆଁରେ case କରିବୁ ।

ରୁପା : ଏମିତି କ'ଣ କହୁଚୁଲୋ ଶିପ୍ରା ! ମୋ ଭୁଲ୍ ତ ମୁଁ ମାନିନେଇଚି । ହଁ, ମୁଁ ଭାବୁଛି- ଚାଲ ଆମେ ସମସ୍ତେ ଥାନାକୁ ଯିବା, ଏତାଲା

Digitized by srujanika@gmail.com

ଦେବା । ଦେଖିବା, ପୋଲିସ୍ ଯଦି ସେମାନଙ୍କୁ ଖୋଜିପାଏ...

ଲତା ଯାହା କରୁଛ ଶୀଘ୍ର କର । ମୋ ଛୁଆମାନେ ତେଣେ କ'ଣ ଯେ କରୁଥିବେ...

ରୁପା ଚାଲ ! ଶୀଘ୍ର ଚାଲ । ମୁଁ ଏମିତି ବାହାରି ପଡୁଚି ।

(ଯିବାକୁ ଉଦ୍ୟତ ହୋଇଛନ୍ତି । ମହେନ୍ଦ୍ର, ଦିବାକର, ବଡ଼ବାବୁ ଇତ୍ୟାଦି ପ୍ରବେଶ କରିଛନ୍ତି)

ମହେନ୍ଦ୍ର (ପ୍ରବେଶ) କେହି କୁଆଡ଼େ ଯିବା ଦରକାର ନାହିଁ । ଭାଉଜ ! ହଜିଲା ବଳଦ ପରା ଖୋଜିଲା ଠେଇଁ...

ରୁପା (ଆଶ୍ଚର୍ଯ୍ୟରେ) ଏଁ ? ଆପଣ ? ମହେନ୍ଦ୍ରବାବୁ...

ମହେନ୍ଦ୍ର ହଁ ମୁଁ ! (ହସି) ଆପଣ ଏମିତି ଆଶ୍ଚର୍ଯ୍ୟ ହେଇ ଅନେଇଛନ୍ତି କ'ଣ ?

ଶିପ୍ରା (କାନ୍ଦି) ତମେ... ତମେ ଚିଠି ଖଣ୍ଡେ ଲେଖିଦେଇ କୁଆଡ଼େ ଚାଲିଯାଇଥିଲ...

ମହେନ୍ଦ୍ର : ଆହା, ଶିପ୍ରା ! ତମେ କାନ୍ଦୁଚ କାହିଁକି ? ମୁଁ କ'ଣ ସତସତିକା ଚାଲିଯାଇଥିଲି ।

ରୁପା : ଆଉ ଅନ୍ୟମାନେ...

ମହେନ୍ଦ୍ର : ଆସିଛନ୍ତି । ସମସ୍ତେ ଆସିଛନ୍ତି । ଆରେ ବିନୟବାବୁ ! ଦିବାକରବାବୁ । ଏଥର ଗୃହପ୍ରବେଶ କରନ୍ତୁ । (ହସି) ବହୁତ ଦୁଃଖ ପାଇଲେଣି ନାରୀ ସେବିକାମାନେ !

(ହସି ହସି ଅନ୍ୟମାନଙ୍କର ପ୍ରବେଶ)

ବଡ଼ବାବୁ : କ'ଣ ଭଲଅଛନ୍ତି ତ ମିସେସ୍ ପଟ୍ଟନାୟକ ।

ରୁପା (କିଛି ନ କହି ସୁଁ ସୁଁ ହୋଇ କାନ୍ଦିଚି)

ବିନୟ (ପାଖକୁ ଆସି) ରୁପା ! ଆରେ କାନ୍ଦୁଛ କାହିଁକି ? ତମକୁ କଷ୍ଟ ଦେଇଥିବାରୁ ସତରେ ମୁଁ ବହୁତ ଦୁଃଖିତ । ମତେ କ'ଣ କ୍ଷମା କରିବନି ?

ରୁପା (କାନ୍ଦି) ଥାଉ ! ଭୁଲ ମୁଁ କରିଛି ! ତମେ କ୍ଷମା ମାଗୁଛ । ଏଇ ଦେଖ, ତମ ଦେହ ଛୁଇଁ ଶପଥ କରୁଛି ଆଉ ସେ ସଂଘଫଙ୍ଗର

Digitized by srujanika@gmail.com

ନାଆଁ ଧରିବିନି ।

ଦିବାକର : ଭାଉଜ ! ଏମିତି ଛୋଟଛୁଆଙ୍କ ଭଳି କ'ଣ ହଉଛନ୍ତି ?

ଶିପ୍ରା ହେବେନି ? ସାମାନ୍ୟ ଦୋଷ ପାଇଁ, ଏତେ ବଡ଼ ଦଣ୍ଡ ?

ଲତା ରୁପାଅପାଙ୍କ ସହିତ ଆମର, ରୀତିମତ ଝଗଡ଼ା ଲଗେଇ ଦେଲ...

ବିନୟ : ଆମେ ଏମିତି କରି ନଥିଲେ ଆପଣମାନେ ନିଜନିଜର ଭୁଲ୍ ବୁଝିପାରିନଥାନ୍ତେ ।

ଦିବାକର : ଆଉ ଝଗଡ଼ା ନ ଲାଗିଥିଲେ- ମିସେସ୍ ପଟ୍ଟନାୟକ ବିନୟବାବୁଙ୍କୁ ଏତେ ଭଲପାଇନଥାନ୍ତେ (ହସିଛି)

ରୁପା କିନ୍ତୁ ଆମର ଦୋଷଟା କ'ଣ କହିଲେ ?

ବଡ଼ବାବୁ : ଶୁଣନ୍ତୁ ମିସେସ୍ ପଟ୍ଟନାୟକ । ଆପଣମାନେ ସଂଘଟିଏ ଗଢ଼ିଛନ୍ତି । ନାରୀମାନଙ୍କ ପ୍ରଗତି ପାଇଁ କାର୍ଯ୍ୟ କରୁଛନ୍ତି- ଏତ ଅତି ଭଲକଥା । ନାରୀ ନିର୍ଯାତନା ଦୂର କରିବା ପାଇଁ ଆପଣମାନେ ଚେଷ୍ଟା କରୁଛନ୍ତି । ଏହା ଗୌରବର କଥା । କିନ୍ତୁ...

ଶିପ୍ରା କିନ୍ତୁ କ'ଣ ?

ବଡ଼ବାବୁ : କିନ୍ତୁ ନାରୀ ସ୍ୱାଧୀନତା ଆଉ ନାରୀ ପ୍ରଗତିର ଅର୍ଥ ନୁହେଁ ଯେ, ଘରସଂସାରକୁ ଉଜାଡ଼ିଦେବା ।

ଲତା ଘର ସଂସାରକୁ ଉଜାଡ଼ିଦବା ମାନେ...

ଦିବାକର : ମାନେ ଆଉ କ'ଣ ? ଆପଣମାନଙ୍କର ଅସହଯୋଗ ।

ବିନୟ ଅସହଯୋଗ କରି ଆପଣମାନେ ଆମକୁ ଯାହା ହରବର କଲେଣିନା... । ଆମ ପୁରୁଷପଣିଆ ଏକଦମ୍ ଠପ୍ ହେବାକୁ ବସିଲାଣି ।

ରୁପା : ଆଉ, ଆପଣମାନେ କହୁଛନ୍ତି, କ'ଣ ଘରସଂସାରର ଦାୟିତ୍ୱଟା ସବୁ ଯୁଗରେ... ସବୁ ସମୟରେ କେବଳ ନାରୀର ? ପୁରୁଷର କ'ଣ କିଛି ଦାୟିତ୍ୱ ନାହିଁ ?

ବଡ଼ବାବୁ : ପୁଣି ଭୁଲ୍ ବୁଝିଲେ ମିସେସ୍ ପଟ୍ଟନାୟକ । କୋଉ ଯୁଗରେ କ'ଣ ଥିଲା- ସେ କଥା ଏବେ କାହିଁକି କହୁଛନ୍ତି ? ଆମେ କ'ଣ ଚାହୁଁନା,

Digitized by srujanika@gmail.com

ଆମ ମାଆ, ମାଉସୀ, ଭଉଣୀ, ଝିଅ, ନାତୁଣୀ– ଏମାନେ ଶିକ୍ଷିତା ହୁଅନ୍ତୁ । ପ୍ରଗତିଶୀଳା ହୁଅନ୍ତୁ । ସମାଜରେ ପୁରୁଷ ସହ ସମାନ ଅଧିକାର ପାଆନ୍ତୁ ବୋଲି ।

ମହେନ୍ଦ୍ର ହଁ ଭାଉଜ । ଆପଣମାନେ ପୁରୁଷ ସମାଜ ପ୍ରତି ଗୋଟାଏ ମିଛ ସନ୍ଦେହ, ମିଛ ଅଭିଯୋଗ ନେଇ ଯାହା ସବୁ କରିବାକୁ ଚାହୁଁଛନ୍ତି ତାହା ଠିକ୍ ନୁହେଁ । ନାରୀ ଓ ପୁରୁଷ ସମାଜର ଏକ ଅଙ୍ଗ ବିଶେଷ । ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱଭଳି, ଉଭୟଙ୍କର ସ୍ନେହ- ସଦିଚ୍ଛା ଓ ସହଯୋଗରେ- ଘରସଂସାର ହସିଉଠେ । ଆଉ ଉଭୟଙ୍କର ଶିକ୍ଷା- ପ୍ରଗତି- ଚିନ୍ତା ଚେତନାର ସମଷ୍ଟିରେ ସମାଜ ହୁଏ ସୁସ୍ଥ ସୁନ୍ଦର । କିନ୍ତୁ ପରସ୍ପରର ଏ ଭୁଲ୍ ବୁଝାମଣା ଯୋଗୁ ଦିଅଁ ଗଢୁ ଗଢୁ ବାନର ପାଲଟିଯିବ ଯେ... ।

ରୁପା : ସତରେ କ'ଣ ଆପଣମାନେ, ଆମ କାମକୁ ଏତେ ପସନ୍ଦ କରନ୍ତି ?

ବିନୟ ନିଶ୍ଚୟ ! ଖାଲି ପସନ୍ଦ କାହିଁକି ? ଆମେ ବି ତମମାନଙ୍କ ସହିତ ମିଶି- ସମାଜରେ ନାରୀ ଜାଗରଣ ପାଇଁ ସବୁକିଛି କରିବାକୁ ପ୍ରସ୍ତୁତ ଅଛୁ ।

ଦିବାକର : କିନ୍ତୁ ଅସହଯୋଗ ପନ୍ଥାରେ ନୁହେଁ । ପରସ୍ପରର ସହଯୋଗରେ । ନା କ'ଣ କହୁଛନ୍ତି ଶିପ୍ରାଦେବୀ ?

ଶିପ୍ରା : ବାସ୍ତବିକ୍, ଆମେ ଆପଣମାନଙ୍କୁ ଭୁଲ୍ ବୁଝି କେତେ କଷ୍ଟ ନ ଦେଲୁ ?

ବଡ଼ବାବୁ : ଏବେ ବୁଝିପାରିଲେ ତ ? ଏଥର ଆମେ colony ରେ ସମସ୍ତେ ମିଶି ଗୋଟାଏ ନୂଆ ସଂଘ ଗଢ଼ିବା । ଯାହାର ନାଆଁ ରହିବ- ସମାଜ ସୁଧାର ସଂଘ ।

ମହେନ୍ଦ୍ର ଆଉ ତା'ର ସଂପାଦିକା ହେବେ ଆମ ଭାଉଜ ଅର୍ଥାତ୍ ମିସେସ୍ ରୂପବାଳା ପଟ୍ଟନାୟକ ।

ରୁପା ନାଇଁ ବାବା ! ମୋର ସେ ପଦପଦବୀ ଆଉ କିଛି ଦରକାର ନାହିଁ । ଯା'ଙ୍କ ମୁଣ୍ଡକୁ କେତେବେଳେ କ'ଣ ଉଠିବ ଯେ...

Digitized by srujanika@gmail.com

ବଡ଼ବାବୁ : (କଥା ଛଡ଼େଇ) ଆଉ କିଛି ଉଠିବାର ନାହିଁ ଆଜ୍ଞା ! ଆରେ ହଁ । ଆମର ନୂତନ ସଂଘର ଜନ୍ମୋତ୍ସବ ଉପଲକ୍ଷେ...

ମହେନ୍ଦ୍ର (କଥା ଛଡ଼େଇ) ସଂପାଦିକାଙ୍କ ଘରେ ମସ୍ତବଡ଼ ଭୋଜିଟାଏ ହେଇଯାଉ । ନା କ'ଣ କହୁଛ ଭାଉଜ ?

ଲତା : କ'ଣ କହୁଛ ରୁପାଅପା ?

ରୁପା : (ହସି) ମୁଁ କ'ଣ ମନା କରୁଛ କି ? ହେଲେ ଆସି ବାରଟା ବାଜିବାକୁ ବସିଲାଣି । ଘରେତ ପରିବାପତ୍ର କିଛି ନାହିଁ ।

ବଡ଼ବାବୁ : ଆହା ! ଆପଣ ଏତେ ବ୍ୟସ୍ତ ହଉଛନ୍ତି କାହିଁକି କହିଲେ ? ଆମେ ସମସ୍ତେ ମିଶିଗଲେ, ଚଟାପଟ ସବୁ ସରିଯିବ । ଆଉ ଡେରି କାହିଁକି ? ଆରେ, ବିନୟବାବୁ, ମହେନ୍ଦ୍ର... ତମେମାନେ ଗୋଟେ ତାଲିକା କଲ ମୁଁ ବଜାରରୁ ସବୁ ନେଇଆସିବି ।

ଶିପ୍ରା ରୁପାଅପା ! ଆଉ ଡେରି କାହିଁକି । ଶୁଭସ୍ୟ ଶୀଘ୍ରମ୍ ଚାଲ, ଆମେ ହାଣ୍ଡିଚୁଲିର ବ୍ୟବସ୍ଥା କରିବା ।

ମହେନ୍ଦ୍ର (ଚିଡ଼େଇବା ଭଳି) ହଁ ମ ! ଝିଅ ଜନମ ତ ଚୁଲୀ ମୁଣ୍ଡକୁ । ଯାହା ହେଲେ ବି, ସ୍ତ୍ରୀଙ୍କ ହାତ ପରା ଲକ୍ଷ୍ମୀଙ୍କ ହାତ ଆହା... ।

ଶିପ୍ରା ଆଉ ପୁରୁଷଙ୍କ ହାତ କ'ଣ ଜଗନ୍ନାଥ ? ମାନେ ଖଣ୍ଡିଆ ।

ବଡ଼ବାବୁ : ଆଃ ପୁଣି କ'ଣ ଝଗଡ଼ା କରିବାରେ ଲାଗିଗଲ ତ ମହେନ୍ଦ୍ରବାବୁ । ଆପଣ ଇଆଡ଼େ ଆସିଲେ ଆପଣଙ୍କ କାମ ହେଲା ମସଲାବଟା । ଯାଆନ୍ତୁ ।

ମହେନ୍ଦ୍ର ଏଁ ! ସମାଜ ସୁଧାର ସଂଘର ମୁଁ ଜଣେ ମାନ୍ୟଗଣ୍ୟ ସଦସ୍ୟ । ମୋ ହାତରେ ପୁଣି ମସଲାବଟା । ହଉ ହେଲା... ଜୟ ସମାଜସୁଧାର ସଂଘ କି ଜୟ... । (ସମସ୍ତେ ହସିଛନ୍ତି ।

❐

Digitized by srujanika@gmail.com



# ଷୋଳକଳା ଡାହାଣୀକୁ
# ବତିଶିକଳା ଗୁଣିଆ

Digitized by srujanika@gmail.com




| | |
|---|---|
| ଅଶ୍ୱିନୀ | କୌଣସି ଅଫିସର୍ ସରକାରୀ କିରାନୀ (ବୟସ- ୩୦ ରୁ ୩୫ ବର୍ଷ) |
| ବିପ୍ଳବ | ଅଶ୍ୱିନୀର ବନ୍ଧୁ- ବୟସ– ୩୦ ରୁ ୩୫ |
| ପୋଲିସ୍ ଅଫିସର୍ : | ବୟସ- ୩୦ ରୁ ୩୫ ବର୍ଷ |
| ଗୀତା | ଅଶ୍ୱିନୀର ସ୍ତ୍ରୀ- ବୟସ- ୨୫ରୁ ୩୦ |
| ବିଜୟା | ଅଶ୍ୱିନୀର ଅଫିସ୍ ସାଙ୍ଗର ସ୍ତ୍ରୀ– ବୟସ– ୨୫ ରୁ ୩୦ |

Digitized by srujanika@gmail.com

ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼ଓଡ଼

## ॥ ପ୍ରଥମ ଦୃଶ୍ୟ ॥

(ସମୟ ସକାଳ । ଅଶ୍ୱିନୀବାବୁ ଚେୟାର୍‌ରେ ବସି ରେଡ଼ିଓରୁ ଖବର ଶୁଣିବାରେ ବ୍ୟସ୍ତ । ଏତିକିବେଳେ ଅଶ୍ୱିନୀବାବୁଙ୍କ ସ୍ତ୍ରୀ ଗୀତାଦେବୀ ହାତରେ ଚା କପ୍ ଧରି ଆସିଛନ୍ତି । ସାଧାରଣ ପରିପାଟୀ ।)

ଗୀତା — ଚା' ନିଅ ।

ଅଶ୍ୱିନୀ — (ଚା' କପ୍ ଉଠାଇ ଢୋକେ ପିଇ) ଇୟେ କ'ଣ ଚା, ନା ଖାଲି ଲୁଣପାଣି ?

ଗୀତା — ତମେ ଜାଣିଥିବ !

ଅଶ୍ୱିନୀ — (ନରମି ଯାଇ) ଅମୂଳ, ଚିନି ସରିଯାଇଛି କି ?

ଗୀତା — ସେ କଥା କ'ଣ ତମେ ଜାଣନା ? କାଲିଠାରୁ ପରା ସରିଲାଣି । ତମର କ୍ଷ'ଣ ଆଜିକାଲି କିଛି ମନେ ରହୁଛି ।

ଅଶ୍ୱିନୀ — କାହାଠାରୁ ଚିନି ଟିକେ ଧାର୍ ଆଣି ଚଳେଇ ଦେଲନି ।

ଗୀତା — କାଲି ପରା ସନ୍ଧ୍ୟାବେଳେ ବୀଣାବୋଉଠାରୁ କପେ ଚିନି ଧାର୍ ଆଣିଥିଲି । ପୁଣି ଆଜି ସକାଳେ ଆଉ କାହା ପାଖକୁ ଯାଇଥାନ୍ତେ ନା କ'ଣ ? ତମକୁ ସିନା ଲାଜ ଲାଗୁନି, ହେଲେ ମତେ ଲାଜ ଲାଗୁଛି । ମୁଁ ଆଉ ପାରିବିନି । ଏତେ ଟାଣଟୁଣ ହେଇ ଏ ଘର ଚଳେଇ ପାରିବିନି ।

ଅଶ୍ୱିନୀ — ଓହୋ ଗୀତା । ତମେ ଜାଣ ମୋର ଗୋଟେ ବଡ଼ ଅଫିସର ଚାକିରି ନୁହେଁ । କିରାଣୀ ଚାକିରିଟା । ମାସକୁ ମାସ ଘରଭଡ଼ା, ସଉଦାପତ୍ର ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦକୁ କାଟିକୁଟି ନ ଚଳିଲେ ପଇସା ନିଅଣ୍ଟ ହେବ ।

Digitized by srujanika@gmail.com

ଗୀତା କାହିଁକି ? ତମ ସାଙ୍ଗରେ ଯେଉଁମାନେ କିରାନୀ ଚାକିରି କରିଛନ୍ତି, ସେମାନେ କ'ଣ ଏମିତି କାଟିକୁଟି ଚଳୁଛନ୍ତି । ସେମାନେ ପୁଣି କେମିତି ଘର ଚଳେଇ ଟି.ଭି. ଫ୍ରିଜ୍‌ଠାରୁ ଆରମ୍ଭ କରି ସବୁ ଜିନିଷ କରିପାରୁଛନ୍ତି । ଆଉ ତମେ ! ହୁଁଃ (ଟିକେ କାନ୍ଦି) ବାହାହେଲା ଦିନୁ ମୋ ପାଇଁ ଭଲ ଗହଣା ଖଣ୍ଡେ ତ କରିବା ଦୂରର କଥା । ଭଲ ଶାଢ଼ୀ ଖଣ୍ଡେ କିଣି ଦେଲଣିନା ?

ଅଶ୍ୱିନୀ ଆଃ ଗୀତା । କେତେଥର ଆଉ ତମକୁ ବୁଝେଇବ ? ସେମାନେ ଯୋଉ ଉପାୟରେ ପଇସା ଆଣୁଛନ୍ତି, ସେଟା ଅନ୍ୟାୟ, ଦୁର୍ନୀତି । ମୁଁ ବାବା ସେ କାମ କରିପାରିବିନି ।

ଗୀତା ହଁ । ତମେ ଏକା ମହାପୁରୁଷ ଆଉ ଅନ୍ୟମାନେ ଖାଲି ଦୁର୍ନୀତି କରୁଛନ୍ତି । ହଉ, ତମେ ସତ୍ୟବାଦୀ ହେଇ ସବୁଦିନେ ଭିକାରୀଙ୍କ ଭଳିଆ ଚଳୁଥାଅ । ହେଲେ, ମୁଁ ଆଉ ମୋ ଛୁଆ ତମଭଳି ଆଦର୍ଶବାଦୀ ହେବାକୁ ଚାହୁଁନା । ଦୁନିଆରେ ବଞ୍ଚି ରହିବାକୁ ହେଲେ, ମଣିଷଭଳି ବଞ୍ଚିବାକୁ ଚାହୁଁ ।

ଅଶ୍ୱିନୀ ଗୀତା ! ତା'ହେଲେ ତମେ କହୁଛ । ମୁଁ ଚୋରୀ କରେ । ମୁଁ ଅନ୍ୟାୟ କରେ ।

ଗୀତା ମୁଁ କାହିଁକି ତମକୁ କିଛି କହିବି ଯେ । ମୋର କିନ୍ତୁ ଏତିକି କଥା ଯେ, ଘର ଚଳେଇବା ଦାୟିତ୍ୱ ତମର ଏଣୁ ତମେ କେମିତି କ'ଅଣ କରି ଘର ଚଳେଇବ ସେକଥା ତମେ ଜାଣ । ମୁଁ କିନ୍ତୁ ଆଉ ଏତେ ଅଭାବ ଅନଟନରେ ଚଳିବାକୁ ଚାହେଁନା । ହଁ... । (ତମତମ ହେଇ ଚାଲିଯାଇଛି)

ଅଶ୍ୱିନୀ ଗୀତା ! ଏ ଗୀତା ! ଆରେ ଶୁଣମ । (ଡାକି ଡାକି ଭିତରକୁ ଯାଇଛନ୍ତି)

Digitized by srujanika@gmail.com

## ॥ ଦ୍ୱିତୀୟ ଦୃଶ୍ୟ ॥

(ବୈଠକଘରର ଦୃଶ୍ୟ । ବାହାରେ କବାଟ ବାଡ଼େଇବାର ଶବ୍ଦ । ଭିତରୁ ଆସିଛନ୍ତି ଗୀତାଦେବୀ ।)

ଗୀତା  କିଏ ? (କବାଟ ଖୋଲିଛି)

ବିଜୟା  (ଭିତରକୁ ଆସିଛି । ଦେହରେ ଗହଣା ଭର୍ତ୍ତି ଓ ଦାମୀ ଶାଢ଼ୀ ପିନ୍ଧିଛନ୍ତି) ନମସ୍କାର ! ମତେ ଚିହ୍ନିପାରୁନାହାନ୍ତି ବୋଧେ । ଉଁ କେମିତି ବା ଚିହ୍ନିବେ । ଏଇ ଆଠଦିନ ହେବ ତ ଆମେ ଏ କଲୋନୀକୁ ଆସିଲୁ । (ଚଉକିରେ ବସିପଡ଼ି) ଆରେ ବସୁନାହାନ୍ତି । ମୁଁ ହଉଛି ବିଜୟା, ଏ କଲୋନୀର ନୂଆଲୋକ । ଆମ ବାବୁ । ଆରେ ବୀରେନ୍ଦ୍ରବାବୁ ମ ! ଅଶ୍ୱିନୀବାବୁଙ୍କ ସହିତ ଏକା ଅଫିସ୍‌ରେ କାମ କରନ୍ତି । ଏଥର ଚିହ୍ନିପାରିଲେ ତ ?

ଗୀତା  ଆରେ ! (ହସି) ଆପଣ ବୀରେନ୍ଦ୍ର ବାବୁଙ୍କ ମିସେସ୍ । ବହୁତ ଖୁସି ହେଲି । ଆମ ବାବୁ ତ ଆପଣମାନଙ୍କ କଥା କହୁଥିଲେ ।

ବିଜୟା  ସମ୍ବଲପୁରରୁ ବଦଳି ହେଇ କଟକ ଆସିଲୁ ତ ! ମୁଁ ଭାବିଲି, ଯାଏ ଟିକେ ସମସ୍ତଙ୍କ ସହିତ ଚିହ୍ନାପରିଚୟ ହେଇ ଆସେ ! ସାଇପଡ଼ିଶା ହେଇ ଯେତେବେଳେ ଚଳିବା । ନା କ'ଣ କହୁଛ ଭଉଣୀ !

ଗୀତା  ହଁ ହଁ ଖୁବ୍ ଭଲ କରେ । ଚିହ୍ନା ପରିଚୟ ନ ହେଲେ ବିଦେଶ ଜାଗାରେ ଚଳିବା କ'ଣ କମ୍ କଷ୍ଟ । ଆଚ୍ଛା ତମେ ବସିଥାଅ, ମୁଁ ଟିକେ ଚା' କରି ଆଣେ ।

ବିଜୟା  ଆରେ ନାଇଁମ ଥାଉ । (ଚାରିଆଡ଼େ ନଜର ବୁଲାଇ) ଚାକରବାକର ରଖିନା ବୋଧେ ।

ଗୀତା  ନାଇଁ ମ କିବା କାମ ଯେ !

ବିଜୟା  ଯା' କୁହ ଭଉଣୀ । ଆମ ବାବୁ କିନ୍ତୁ ମତେ କିଛି କରେଇ ଦିଅନ୍ତିନି । କହନ୍ତି– 'ବିଜୟା ! ବର୍ତ୍ତମାନ ସଉକ କରିବା ବୟସ । ଏ ବୟସରେ ଏତେ ଖଟିଲେ ଦେହ ରହିବଟି ? ମୁଁ ଯେତେ ମନା କଲି

Digitized by srujanika@gmail.com

ଶୁଣିଲେନି । ରୋଷେଇ କରିବାକୁ ପିଲାଟିଏ ରଖିଛନ୍ତି ଆଉ ବାସନ ମଜାମଜି, ଲୁଗା ସଫା ପାଇଁ ଜଣେ ସ୍ତ୍ରୀ ଲୋକ ଆସେ ।

ଗୀତା (ହସି) ଆପଣ ତ ମହାସୁଖୀ !

ବିଜୟା ନାଇଁ ମ । ବାପଘରେ ମୁଁ ଭାରି ଗେଲବସରରେ ବଢ଼ିଥିଲି, ହଲିଲା ପାଣିକି ଗୋଡ଼ ଦିଏନି । ଆଉ ଶାଶୁଘରେ, ବାହା ଗଣ୍ଠିରୁ ତ ବାହାରେ ବୁଲିଲି । କାମଦାମ ମତେ ପୋଷାଏନି । ଆମ ବାବୁ କିନ୍ତୁ ସବୁବେଳେ ମୋ ପାଇଁ ଭାରି ବ୍ୟସ୍ତ ।

ଗୀତା ଯା' ହେଉ ! ଆପଣ ମହାଭାଗ୍ୟବତୀ ମଧ ।

ବିଜୟା ଏଇ ଦେଖୁନ ! ମୁଁ ଯୋଉ ଶାଢ଼ୀଟା ପିନ୍ଧିଛି, ଯା'ର ଦାମ୍ କେତେ ହେବ କହିଲ ? ଯା'ର ଦାମ ଛଅଶହ ପଚାଶ ଟଙ୍କା ।

ଗୀତା ସତେ ?

ବିଜୟା ତମକୁ ମିଛ ମତେ ସତ ଭଉଣୀ । ଆମ ବାବୁମ । ଯାଇତାଇ ଲୁଗା ପିନ୍ଧିଲେ ଭୀଷଣ ବିରକ୍ତ ହୁଅନ୍ତି । କେତେ ଭଲ ଭଲ ଲୋକଙ୍କ ସାଙ୍ଗରେ ବସାଉଠା କରୁଛନ୍ତି । ତାଙ୍କର ପୁଣି prestige ଅଛି ତ । ଘରେ ୪ ଶହ / ୫ ଶହ ଟଙ୍କାରୁ କମ୍ ଦାମ୍‌ର ଶାଢ଼ୀ ମୁଁ ପିନ୍ଧେନା । ପିଲାଦିନୁ Costly ଜିନିଷ ବ୍ୟବହାର କରିବା ଅଭ୍ୟାସଟା ରହିଯାଇଛି ପରା । ଆଉ ଏ ଗହଣା ଦେଖୁଚଟି ? ଯେତେ ନୂଆ design ର ଗହଣା ବାହାରିବ, ବାବୁ ମୋ ପାଇଁ ନିଶ୍ଚୟ କିଣି ଆଣିବେ ସବୁଗୁଡ଼ାକ ପୁଣି Costly ।

ଗୀତା ଖୁବ୍ ଭଲ ହେଇଛି ଆପଣଙ୍କର ଏ ଗହଣାଗୁଡ଼ାକ ।

ବିଜୟା (ହସି) ଆମ ଘରକୁ କେବେ ଚାଲ ସବୁ ଦେଖେଇବି ମ ! ସମ୍ବଲପୁରରେ ଥିଲାବେଳେ । ସେ colony ସାରା ସମସ୍ତେ ମୋରି ଶାଢ଼ୀ ମୋରି ଗହଣାର design ଦେଖି ନିଜର କିଣନ୍ତି ମ ! ଆଉ ବଜାରକୁ ଯାହା ନୂଆ ଆସିଲା, ସବୁ ଆମ ଘରକୁ ଆସିବ, ଆସିବ ନିଶ୍ଚୟ ଆସିବ । ସବୁ costly ... (କାଶିଛନ୍ତି) କିଏ ମନେ କରୁଛିନା

Digitized by srujanika@gmail.com

କ'ଣ ? ମୁଁ ଜାଣେ ପରା ସମ୍ବଲପୁରରେ ଲୋକେ ମତେ ଝୁରି ହଉଥିବେ । (ପୁଣି କାଶିଛନ୍ତି)

ଗୀତା ରୁହନ୍ତୁ । ପାଣିଗ୍ଲାସେ ଆଣେ । (ଭିତରୁ ପାଣିଗ୍ଲାସେ ଆଣି ଦେଇଛି) ଏଇ ପାଣି ନିଅନ୍ତୁ ।

ବିଜୟା (ଅଛ ପିଇ ଗ୍ଲାସ୍ ରଖିଦେଇଛି) ଉଁ ହୁଁ ଏ ପାଣି ମୋଟେ ଭଲଲାଗୁନି । ତମର କ'ଣ ଫ୍ରିଜ୍ ରଖିନା କି ? ମୋର କିନ୍ତୁ ଫ୍ରିଜ୍ ପାଣି ପିଇବାର ଏମିତି ଗୋଟେ ଅଭ୍ୟାସ ହେଇଯାଇଛି, ଖାଲି ପାଣି ପିଇଲେ ବାନ୍ତି ଲାଗେ ।

ଗୀତା (ଅପ୍ରସ୍ତୁତ ହେଇ) ଇୟେ ଫ୍ରିଜ୍‌ଟାଏ ଆଣିବାକୁ କହୁଥିଲେ ଯେ । କିନ୍ତୁ ମୁଁ ମନାକଲି ଭଡ଼ାଘର । ଆଜି ଏଠି ତ କାଲି ଆଉ କୋଉଠି । ଏତେ ସବୁ ଦାମୀ ଜିନିଷ !

ବିଜୟା (କଥା ଛଡ଼େଇ) ଓହୋ ! କ'ଣ ହେଲା ସେଇଠୁ ? ମୋ ଘରେ କ'ଣ ନାହିଁ ? Colour T.V., V.C.R. ଫ୍ରିଜ୍, ଗ୍ୟାସ୍, ଡ୍ରେସିଂ ଟେବୁଲ୍, ଫିଲ୍‌ଟର୍ ସବୁ । ସବୁ କିଛି ଅଛି ମ ! ଆମେ ତ ପୁଣି ସମ୍ବଲପୁରରୁ ବଦଳି ହେଇ କଟକ ଆସିଲୁ ।

ଗୀତା (ଇତସ୍ତତଃ ହେଇ) ହଁ ଯେ ।

ବିଜୟା ବୁଝିଲ ଭଉଣୀ । ଆଜିକାଲି ଯୁଗରେ ଏସବୁ ନ ହେଲେ ନ ଚଳେ । ଏଇ ଦେଖୁନ । ସାଧାରଣ ପିଅନଟାଏ ବି କେମିତି ସ୍କୁଟର ଚଢ଼ି ବୁଲୁଛି ।

ଗୀତା (କଥା ବଦଳେଇ) ଆଉ ଆପଣଙ୍କ ପିଲାମାନେ ?

ବିଜୟା (ହସି) ଆମେ ଦୁଇ ଆମର ଦୁଇ । ଗୋଟେ ପୁଅ, ଗୋଟେ ଝିଅ । ସୁଖୀ ପରିବାର । ପିଲା ଦି'ଟା ଯାକ ମୋର ସବୁଥିରେ advance ପାଠ, ନାଚ, ଗୀତ, ଖେଳକୁଦ ସବୁଥିରେ ପରା ଖାଲି first ମୋ ଘର ସାରା କପ୍, ସିଲ୍‌ରେ ଭର୍ତ୍ତି । ଗଲେ ଦେଖିବନି କି । ସେ କଲୋନିସାରା ସମସ୍ତେ ପରା ମତେ ଏଇଥିପାଇଁ ଈର୍ଷା କରନ୍ତି । ଆଉ ଆମ ବାବୁ କ'ଣ କହନ୍ତି ଜାଣ ? ବାବୁ କହନ୍ତି– ବିଜୁ ତମେ

Digitized by srujanika@gmail.com

| | |
|---|---|
| | ଗୋଟେ ଅମୃତଗର୍ଭା । ଆଉ ତମେ ମତେ ଦୁଇଟି ରତ୍ନ ଦେଇଛ । (ହସିଛନ୍ତି) |
| ଗୀତା | ପିଲାମାନଙ୍କୁ ସାଙ୍ଗରେ ଟିକେ ଆଣିଲେନି ? |
| ବିଜୟା | ନାଇଁ, ନାଇଁ ଭଉଣୀ ଦୁଇ ଦୁଇଟା ଟିଉସନ୍ ମାଷ୍ଟର ରଖିଛିଟି । ସବୁବେଳେ ଖେଳିଲେ ବୁଲିଲେ, ପିଲାଙ୍କ ପାଠପଢ଼ା ନଷ୍ଟ ହବନି । ତା'ଛଡ଼ା Convent student ତ ! ଆଉ ତମ ପିଲାମାନେ ? |
| ଗୀତା | ଦୁଇଝିଅ । ଗୋଟେ ପୁଅ ଏଇ ହାଇସ୍କୁଲ୍‌ରେ ପଢୁଛନ୍ତି । |
| ବିଜୟା | ଯା' କୁହ ଭଉଣୀ । Convent ପିଲାଗୁଡ଼ାକ ଭାରି smart, ଭାରି ବୁଦ୍ଧିଆ । କୋଉଥିରେ ସେମାନେ ହାରିବେନି ସେଇଥିପାଇଁ ତ ପିଲା ଦି'ଟାଙ୍କୁ Convent ରେ ଭର୍ତ୍ତିକଲି । ହଁ, ସମସ୍ତେ କ'ଣ ଆଉ convent ରେ ପଢ଼େଇ ପାରିବେ । ଏଥିରେ ବହୁତ ଖର୍ଚ୍ଚ ପରା । ଯେତେ ସବୁ costly dress.. costly ଜିନିଷ ସବୁ ତାଙ୍କ ପାଇଁ ଦରକାର । (ହସି) ଏମିତି ବାଜେ ସ୍କୁଲ୍‌ରେ ପାଠ ପଢ଼ାଇ, ପିଲାଙ୍କୁ ଅମଣିଷ କରିବା ଅପେକ୍ଷା, costly ହଉ ପଛକେ, ଭଲ ସ୍କୁଲ୍‌ରେ କାହିଁକି ନ ପଢ଼ାଇବା ଯେ... । |
| ଗୀତା | (କିଛି ନ କହି ନୀରବ ରହିଲେ) |
| ବିଜୟା | ଆରେ ଏମିତି ମନମାରି ଦେଲ କାହିଁକି ? କ'ଣ ହେଲା କି ? |
| ଗୀତା | (ଜୋର୍ କରି ହସିଛି) ନାଇଁ ମ ! ମୁଣ୍ଡଟା ଟିକେ ବିନ୍ଧୁଛି ଯେ । |
| ବିଜୟା | ଉଃ ! ଅଣ୍ଟାଟା ମୋର ଭକଭକ ହୋଇ ବିନ୍ଧିଲାଣି କିଛି ଭାବିବନି ଭଉଣୀ । (ହସି) ଇୟେ କାଠ ଚଉକିରେ ବସିବା ଅଭ୍ୟାସ ମୋର ନାହିଁ ତ ସେଇଥିପାଇଁ । ମୋ ବାପଘରେ ଡନ୍‌ଲତା ସୋଫା bed ଆଉ ଏଠି ବି ସେୟା । ସବୁ costly ମ ! ପିଲାଦିନୁ ସେଇ ବଦଭ୍ୟାସଟା ରହିଯାଇଛି ତ । |
| ଗୀତା | ଆଚ୍ଛା ବିଜୟା ଦେବୀ ଆପଣଙ୍କ ବାବୁ କୋଉ Post ରେ ଅଛନ୍ତି କି ? |
| ବିଜୟା | (ହସି) ମଲା ଯା ! ସାତଖଣ୍ଡ ରାମାୟଣ ସରିଲାଣି ତମେ ଏ ଯାଏ |

Digitized by srujanika@gmail.com

କିଛି ବୁଝିପାରିଲନି । ତମ ଅଶ୍ୱିନୀବାବୁ ଯୋଉ କିରାନୀ, ଆମ ବାବୁ ବି ସେଇ କିରାନୀ ମ ।

ଗୀତା ବୀରେନ୍ଦ୍ରବାବୁ ବୋଧହୁଏ Over time କରନ୍ତି ନ ହେଲେ ଅନ୍ୟକିଛି side business.... ।

ବିଜୟା (କଥା ଛଡ଼େଇ) ଉଁ, ହୁଁ... ମୋଟେ ନୁହେଁ । (ହସି ଟିକେ ଧୀରସ୍ୱରରେ) କାହିଁକି କ'ଣ ହେଲାକି ?

ଗୀତା ନାଇଁ ଯେ ମୁଁ କହୁଥିଲିକି । ଦୁଇଜଣଙ୍କର ଦରମା ତ ସମାନ । ଅଥଚ ଆପଣ ଏତେସବୁ କେମିତି... ।

ବିଜୟା (ହସି) ସେଇଠିତ ପେଞ୍ଚ୍ ଅଛି । ବୁଝିଲ ଗୀତା ଉଦ୍‌ଯୋଗୀ ପୁରୁଷ କାନ୍ଧରେ ଲକ୍ଷ୍ମୀ ଥାଆନ୍ତି ପରା । ଯୋଉ ପୁରୁଷ ଉଦ୍‌ଯୋଗୀ ତା'ପାଖରେ ଧନଜନ ଆପେ ଆପେ ମାଡ଼ି ଯାଏ ମ । ବାହାହୋଇ ଆସିବା ପରେ ମୁଁ ୟା'ଙ୍କୁ କ'ଣ କମ୍ ବୁଝେଇଚି ? ଶେଷରେ ମୋ କଥା ମାନିଲେ ।

ଗୀତା ଆଉ ଆମ ବାବୁ । ଅଫିସ୍ କାମଛଡ଼ା କିଛି କରିବେନି !

ବିଜୟା ଉଁ, ହୁଁ, ଭଉଣୀ । ଅଫିସ୍ କାମ କରିବାକୁ କ'ଣ କ'ଣ ମନା କରୁଛି ? ହେଲେ, ସେଇ କାମ ଭିତରେ ସବୁ ଅଛି ମ ! ପୁରୁଷପୁଅ ହେଇ ଯଦି ଚାଲାକ୍ ଚତୁର ନ ହେବ, ତା'ହେଲେ ସେ କି ପୁରୁଷ ମ ! (ଘଣ୍ଟା ଦେଖି) ଆଚ୍ଛା ଭଉଣୀ । ଏଥର ମୁଁ ଆସୁଛି । (ଉଠିଛନ୍ତି)

ଗୀତା ଆଉ ଟିକେ ବସିଲେନି ।

ବିଜୟା (ଗୀତା ଗାଲକୁ ଟିପିଦେଇ) ଆସିବି ମ ଆସିବି । ପଡ଼ିଶା ହେଇ ରହିଲେ ଯେତେବେଳେ ନ ଆସି କ'ଣ ରହିହେବ ? ଆଜି କିନ୍ତୁ ବହୁତ ଡେରି ହେଇଗଲାଣି । ପିଲାଏ ଖାଇବେ, ବାବୁ ବି ଅଫିସରୁ ଆସିଯିବେ । ଆଜି Film ଯିବାକୁ କହୁଥିଲେ ତ । ହଉ ଭଉଣୀ, ଯାଉଛି । ତମେ କିନ୍ତୁ ନିଶ୍ଚୟ ଆମ ଘରକୁ ଆସିବ ।

(ବାହାରକୁ ଚାଲିଯାଇଛନ୍ତି । ତାଙ୍କ ପଛେ ପଛେ ଗୀତା ଯାଇଛି)

Digitized by srujanika@gmail.com

## ॥ ତୃତୀୟ ଦୃଶ୍ୟ ॥

(ବୈଠକ ଘର ଅଶ୍ୱିନୀବାବୁ ବାହାରୁ ଆସିଛନ୍ତି । ହାତରେ ଦୁଇଟି ବ୍ୟାଗ୍)

ଅଶ୍ୱିନୀ ଗୀତା ! ଏ ଗୀତା ଇଆଡ଼େ ଟିକେ ଆସିଲ ।

ଗୀତା (ଆସିଚି) କ'ଣ କହୁଛ ?

ଅଶ୍ୱିନୀ ନିଅ ବ୍ୟାଗଟା ଆଗେ ଧରିଲ । ଏଥିରେ ତମର ଚିନି, ଅମୂଲ୍ ପରିବାପତ୍ର ସବୁ ଅଛି । ଓଃ ! ସାଇକେଲଟା ବାଟରେ ଖରାପ ହେଇଗଲା ଯେ ଚାଲି ଚାଲି ମଣିଷ ଝାଳନାଳ ହେଇଗଲାଣି ।

ଗୀତା ହବନି ବୁଢ଼ାବଳଦ ପରି ଖଣ୍ଡିଆ ସାଇକେଲ୍ ପେଲିବ । ତମେ ହଇରାଣ ହବନି ତ ଆଉ କିଏ ହେବ ?

ଅଶ୍ୱିନୀ (ହସି) ଆମ ଭାଗ୍ୟରେ ତ ଖଣ୍ଡିଆ ସାଇକେଲ୍ ପେଲିବା ଅଛି ଥରେ ଗାଡ଼ି ମଟରର ସ୍ୱପ୍ନ ଦେଖିବି କାହିଁକି ? (ସାର୍ଟଟା ଖୋଲି କାନ୍ଥରେ ଟାଙ୍ଗିଛନ୍ତି)

ଗୀତା ନ ଦେଖ ! କିଏ ତମକୁ ସ୍ୱପ୍ନ ଦେଖିବାକୁ କହୁଚି କି ? (ଭିତରକୁ ଯିବାକୁ ଉଦ୍ୟତ ହେଇଛନ୍ତି)

ଅଶ୍ୱିନୀ (ଗୀତା ଆଡ଼କୁ ବୁଲିପଡ଼ି) ତମର କ'ଣ ହେଇଚି ଗୀତା, ଆଜି କାହିଁକି ଭାରି ରାଗ ?

ଗୀତା ମୋ କଥା ଜାଣିବାକୁ ତମର ଇଚ୍ଛା ଥିଲେ ସିନା ଜାଣନ୍ତ । କେତେ ଆଉ କହିବି ? କହି କହି ମୋ ପାଟି ବି ବଧିରା ହେଇଗଲାଣି । ଏଣିକି ତମଘର ତମେ ସମ୍ଭାଳ ।

ଅଶ୍ୱିନୀ ପୁଣି ରାଗ ? ମୁଁ ଜାଣେ ଗୀତା ବହୁତ adjust କରି ତମେ ଚଳୁଚ । ହେଲେ ମୁଁ ଆଉ କ'ଣ କରିପାରିବି କୁହ ?

ଗୀତା ଥାଉମ ! ସେ ସାକୁଲାସାକୁଲି କଥା ରଖିଦିଅ । ଉଦ୍‌ଯୋଗୀ ପୁରୁଷ ଲକ୍ଷ୍ମୀପ୍ରାପ୍ତ ହୁଏ ପରା ? ପୁରୁଷ ହେଇ ଯଦି ମୁଣ୍ଡରେ ଟିକେ ବୁଦ୍ଧି ଅକଲ ନାହିଁ... ।

Digitized by srujanika@gmail.com

ଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞଜ୍ଞ

ଅଶ୍ୱିନୀ ଗୀତା ! ତା'ହେଲେ ତମେ କହୁଛ ମୁଁ ପରିଶ୍ରମ କରୁନି ? ମୁଁ ଉଦ୍‌ଯୋଗ କରୁନି ?

ଗୀତା ହେଲେ ଏମିତି ପରିଶ୍ରମ କରିବାରେ କି ଲାଭ ଅଛି ? ସବୁବେଳେ ତ ଖଡ଼ାନାସ୍ତି ଶିରୋମଣି । ତମ ଲାଗି ମାଆଛୁଆ ଆମେ ବି ହଇରାଣ ହେଉଛୁ । (ସକେଇ କାନ୍ଦି) ସାଇପଡ଼ିଶାଙ୍କ ଟାହିଟାପରା ମୁଁ ଶୁଣୁଛି । ଛୁଆଗୁଡ଼ାଙ୍କ ପାଠପଢ଼ା ଠିକ୍ ହେଇପାରୁନି । ଭଲ dress ଖଣ୍ଡେ ସେମାନଙ୍କୁ କିଣି ଦେଇପାରୁଚ ? ଘରେ ଟି.ଭି.ଟାଏ ନାହିଁ ଯେ ପିଲାମାନେ ଯା' ଘର ତା' ଘର ହେଉଛନ୍ତି । ଆଉ ମୋ କଥା ଛାଡ଼ । ଭଲ ଶାଢ଼ୀ କି ଗହଣା ଗୋଟେ ଦେଲଣି ? ଖାଲି କ'ଣ ନା ଅପେକ୍ଷାକର । ଭଲବେଳ ଆସିବ । ହୁଁଃ... ଷାଠିଏ ମହଣ ଘିଅ ହବ ନା ରାଧା ନାଚିବ । ବଅସ ବେଳେ ତ ଭଲଖଣ୍ଡେ ପିନ୍ଧିବାକୁ କି ନାଇବାକୁ ପାରିଲିନି । ଆଉ କ'ଣ ମୁଁ ମଲାପରେ ମୋ ଜୁଇ ନିଆଁରେ ସବୁ ଦେଇଆସିବ ?

ଅଶ୍ୱିନୀ ଗୀତା ! ସବୁ ଜାଣି ତମେ ଏମିତି ଅବୁଝା ହେଲେ... ।

ଗୀତା ମୋର ଆଉ କିଛି ଜାଣିବା ଦରକାର ନାଇଁମ ! କାହିଁକି ? ତମ ସାଙ୍ଗରେ ଆଉ ଯୋଉମାନେ, କିରାନୀ ଚାକିରି କରିଛନ୍ତି, ସେମାନଙ୍କୁ ଦେଖୁଚଟି ? ଦାମୀ ଦାମୀ ଜିନିଷରେ କେମିତି ଘର ଭର୍ତ୍ତି କରିଛନ୍ତି ?

ଅଶ୍ୱିନୀ ଓହୋ ! ଥରେ ତ କହିଛ ଗୀତା ! ସେମାନେ ଯାହା କରୁଛନ୍ତି ସେଟା ଅନ୍ୟାୟ । କଳାଧନରେ କେତେଦିନ ବା ଚଳିବ କହିଲ ତମେ ମୋ ସ୍ତ୍ରୀ । ତମେ କ'ଣ ଚାହଁ ମୁଁ ସେଇଆ କରେ ?

ଗୀତା ନ୍ୟାୟ ଅନ୍ୟାୟ ମୁଁ କିଛି ବୁଝେନା, କଳା କି ଧଳା ମୁଁ କିଛି ଜାଣେନା । ମୁଁ ଚାହେଁ ଅନ୍ୟମାନଙ୍କ ଭଳି ଟିକେ ଶାନ୍ତିରେ ରହିବାକୁ । ସୁଖରେ ରହିବାକୁ ! ଭଲରେ ଟିକେ ଚଳିବା ପାଇଁ, କିଛି କରିବାଟା କ'ଣ ପାପ ?

ଅଶ୍ୱିନୀ ତମେ ଯୋଉ ସୁଖଶାନ୍ତି କଥା କହୁଛ ଗୀତା, ତାକୁ ଦବାକୁ ହେଲେ ମତେ ଅନ୍ୟବାଟ ଧରିବାକୁ ପଡ଼ିବ । ବଞ୍ଚିବା ପାଇଁ ଅନ୍ୟାୟ

Digitized by srujanika@gmail.com

କରିବାଟା କ'ଣ ପାପ ନୁହେଁ ?

ଗୀତା — କହିଲି ପରା ତମେ ଚୋରି କର କି ନାରୀ କର, ମୋର ସେଥିରେ କିଛି ଯାଏ ଆସେ ନାହିଁ; ହେଲେ ମୁଁ ଟିକେ ଅନ୍ୟମାନଙ୍କ ଆଗରେ, ଗର୍ବରେ ମୁଣ୍ଡଟେକି ବାଟ ଚାଲିବାକୁ ଚାହେଁ । ଆଉ ତମେ ଯଦି ମତେ ସେତିକି ନ ଦେଇପାରିବ, ତେବେ ତମ ପାପପୁଣ୍ୟକୁ ନେଇ ତମେ ରୁହ । ମୁଁ ମୋ ପିଲାଙ୍କୁ ଧରି ଗାଁକୁ ଚାଲିଯାଉଚି । (ରାଗ ତମ ତମ ହେଇ ଭିତରକୁ ଚାଲିଯାଇଛି)

ଅଶ୍ୱିନୀ — (ମୁଣ୍ଡରେ ହାତଦେଇ ଚେୟାର ଉପରେ ବସିଯାଇଛି)

## ॥ ଚତୁର୍ଥ ଦୃଶ୍ୟ ॥

(ବୈଠକ ଘର । ମାତ୍ର କିଛି ପରିବର୍ତ୍ତନ ହେଇଛି । ଅଶ୍ୱିନୀବାବୁ ରିକ୍ସାବାଲା ସହ ଟିଭି ପ୍ୟାକେଟ୍‌ଟି ଧରି ପହଞ୍ଚିଛନ୍ତି ।)

ଅଶ୍ୱିନୀ — ହଁ... ହଁ... ଏଇଠି ଏଇଠି ରଖ । (ଟି.ଭି. ରଖିଛନ୍ତି) ଏଇ ନିଅ ତମ ପଇସା । (ରିକ୍ସାବାଲା ପଇସା ନେଇ ଚାଲିଯାଇଛି ।)

ଗୀତା — (ଭିତରୁ ଆସିଛି) ଏଁ ଇଏ କ'ଣ ମ ?

ଅଶ୍ୱିନୀ — ଏଇଟା ଟି.ଭି. ବୁଝିଲ ଗୀତା Colour T.V. । ଏଇ ପ୍ୟାକେଟ୍ ଦି'ଟା ଧର । (୨ଟି ପ୍ୟାକେଟ୍ ଦେଇଛନ୍ତି)

ଗୀତା — ଆରେ ଇୟେ ପୁଣି କ'ଣ ?

ଅଶ୍ୱିନୀ — ଆଗେ ଖୋଲି କରି ଦେଖ ।

ଗୀତା — (ଖୋଲିଛନ୍ତି ଦୁଇଗଣ୍ଡ ଦାମୀ ଶାଢ଼ୀ) ଏଁ ଶାଢ଼ୀ ! (ଖୁସିରେ) ହଇହୋ ଏ ଶାଢ଼ୀର ଦାମ୍‌ତ ପାଞ୍ଚଶ / ଛଅଶହ ଟଙ୍କାରୁ କମ୍ ହେଇନଥିବ ।

ଅଶ୍ୱିନୀ — ଦାମ୍‌ରୁ ତମକୁ କ'ଣ ମିଳିବ ଗୀତା ? ମୁଁ ଆଣିଛି, ତମେ ପିନ୍ଧିବ ଆଉ ସେ ଆର ପ୍ୟାକେଟରେ ଛୁଆଙ୍କ Dress ଅଛି ବୁଝିଲ ?

ଗୀତା — (ଖୁସିରେ) ହଇହୋ । ସତ କହିଲି । ଦିନ ୧୫ଟା ଭିତରେ ତମେ ଏତେ ଜିନିଷ ଆଣିଲ କେମିତି ?

Digitized by srujanika@gmail.com

ଔଔଔଔଔଔଔଔଔଔଔଔଔଔଔଔଔଔଔଔଔଔଔଔଔ

ଅଶ୍ୱିନୀ ସେଥିରୁ ତମକୁ କ'ଣ ମିଳିବ କହିଲ ? ତମେ କହିଥିଲ ନା ଉଦ୍‌ଯୋଗୀ ପୁରୁଷକୁ ଲକ୍ଷ୍ମୀ ଛାଡ଼ି ଯାଇପାରନ୍ତିନି । ବୁଝିଲ ଗୀତା ସେଇ ଲକ୍ଷ୍ମୀଙ୍କ ପ୍ରସାଦରୁ ଏସବୁ ହୋଇପାରୁଛି । ଦେଖିବ ଗୁହ ଏଇ ୩/୪ ମାସ ଭିତରେ ମୁଁ ଯଦି ତମର ସବୁ ଅଭାବ ପୂରଣ ନ କରିଛି...

ଗୀତା ସତେ ?

ଅଶ୍ୱିନୀ ଆଉ କ'ଣ ମୋ'କଥାକୁ ଅବିଶ୍ୱାସ କରୁଛ ? ଆରମାସକୁ ସ୍କୁଟରଟା ଆଣିବି ବୋଲି ଭାବିଛି । ଆଚ୍ଛା ହଉ, ତମେ ଟିକେ ଜଲ୍‌ଦି କାମ ସାରିଲ... । ବଜାରକୁ ଯିବା ।

ଗୀତା ଏଁ ! ମୁଁ ପୁଣି ତମ ସହିତ ବଜାରକୁ ଯିବି

ଅଶ୍ୱିନୀ ହଁତ କ'ଣ ହେଲା ? ବଣିଆ ଦୋକାନ ଯିବା ପାଇଁ ! ତମେ କୋଉ designର ଗହଣାସବୁ କରିବ, ତା'ର ବରାଦ ଦେଇଆସିବ । ଆଉ ଫେରିବାବେଳକୁ ଗ୍ୟାସ୍ ଆଉ ଫିଲ୍‌ଟରଟା ନେଇଆସିବା । ଫ୍ରିଜ୍‌ଟା Choice କରିବା ଆଉ Dining table ଟା ଅର୍ଡ଼ର ଦେଇଆସିବା । ବୁଝିଲ ଗୀତା ତମ କଥା ଶୁଣିଥିଲେ, ଲକ୍ଷ୍ମୀପରା କେବେଠାରୁ ଏ ଘରେ ବନ୍ଦୀ ହେଇ ରହି ସାରନ୍ତେଣି ।

ଗୀତା (ବହୁତ ଖୁସିରେ) ଏଥର ବୁଝିଲ ତ ? ମୁଁ କ'ଣ ଖରାପ କଥା କହୁଥିଲି ?

ଅଶ୍ୱିନୀ ନାଇଁ ଯେ । ମୁଁ ଭୁଲ୍ ବୁଝୁଥିଲି । ହଉ, ତମେ ଗଲ ଟିକେ ଶୀଘ୍ର ବାହାରିପଡ଼ ।

ଗୀତା ଏଇ ସାଙ୍ଗେ ସାଙ୍ଗେ ମୁଁ ବାହାରୁଛି ମ !

(ହସି ହସି ପ୍ୟାକେଟ୍ ଦି'ଟା ନେଇ ଭିତରକୁ ଯାଇଛନ୍ତି)

Digitized by srujanika@gmail.com

## ॥ ଶେଷ ଦୃଶ୍ୟ ॥

(ବୈଠକ ଘର । ଅଶ୍ୱିନୀବାବୁ paper ପଢୁଛନ୍ତି ।)

ବାହାରୁ "ଆରେ ! ଘରେ କିଏ ଅଛନ୍ତି ନା ନାହିଁମ ?"

(ଭିତରକୁ ଆସିଛନ୍ତି ବିପ୍ଳବ । ଅଶ୍ୱିନୀର ସାଙ୍ଗ ।)

ଅଶ୍ୱିନୀ ଆରେ ବିପ୍ଳବ ! ତୁ ? ଆ ଭାଇ ଆ ! ଏଇଠି ବସ । ଆରେ ଗୀତା ! ଦେଖିଲ କିଏ ଆସିଚି ?

ଗୀତା (ଆସି) ବିପ୍ଳବବାବୁ ଯେ !

ବିପ୍ଳବ ନମସ୍କାର ଭାଉଜ ! (ଚାରିଆଡ଼େ ଆଖି ବୁଲାଇ) ଆରେ ଏ କ'ଣ ? ଘରର ନକ୍‌ସା କ'ଣ ପୂରାପୂରି Change କ'ଣ କୋଉଠୁ କିଛି ପୋତାମାଲ୍ ମିଳିଗଲା ନା, ଲଟେରୀ ଉଠିଲା ନା ଏଁ ?

ଅଶ୍ୱିନୀ ଧେତ୍ ! ପୋତାମାଲ ନୁହଁକି ଲଟେରୀ ନୁହଁ ବେ । ଲକ୍ଷ୍ମୀ ମାନେ ଲକ୍ଷ୍ମୀ ଆମ ଘରେ ଧୀରେ ଧୀରେ ପ୍ରବେଶ କଲେ ।

ବିପ୍ଳବ ଭାଉଜ ! ଅଶ୍ୱିନୀ କ'ଣ କହୁଛି ମୁଁ କିଛି ବୁଝିପାରୁନି ।

ଗୀତା ଏଥିରେ ବୁଝିବାର କ'ଣ ଅଛି ? ଉଦ୍‌ଯୋଗ ବଳେ ସର୍ବସିଦ୍ଧି । ମୁଣ୍ଡରେ ଅକଲ ଥିଲେ ପାଞ୍ଚକୁ ପଚିଶ କରିବାଟା କ'ଣ କଷ୍ଟକର ?

ଅଶ୍ୱିନୀ ଏଥର ବୁଝିଲତ ? ତୋ ଭାଉଜର Economic Theory ଟା ମୁଣ୍ଡରେ ପଶିଲା ନା ନାହିଁ । ବଞ୍ଚିବାକୁ ହେଲେ, ସବୁକିଛି କରିବାକୁ ପଡ଼େ । ଆଉ ସେ 'ସବୁକିଛି' ଯାହା ହେଲେ ବି ଅନ୍ୟାୟ ନୁହେଁ (ହସି) ତମେ ଗଲ ଗୀତା ! ଦୁଇକପ୍ ଚା' ଆଉ ଗରମାଗରମ୍ କିଛି ନେଇଆସିବ । (ବାହାରୁ ଡାକ ଶୁଭିଛି) ଅଶ୍ୱିନୀବାବୁ ଘରେ ଅଛନ୍ତି ?

ଅଶ୍ୱିନୀ କିଏ ଡାକୁଛି କି ?

Digitized by srujanika@gmail.com

ଗୀତା ଗୁହ ! ମୁଁ ଦେଖୁଛି । (ଏହି ସମୟରେ ଜଣେ ପୋଲିସ୍ ଅଫିସର ଘର ଭିତରକୁ ଆସିଛନ୍ତି)

ପୋ:ଅ ଏଇଟା ଅଶ୍ୱିନୀ କୁମାର ମିଶ୍ରଙ୍କ ଘର ତ !

ଗୀତା ହଁ ଆଜ୍ଞା ! କିନ୍ତୁ ଆପଣ... ।

ଅଶ୍ୱିନୀ (ଆଗକୁ ଆସି) ମୁଁ ହଉଛି ଅଶ୍ୱିନୀ କୁମାର ମିଶ୍ର । କ'ଣ ହେଲା ?

ପୋ:ଅ ଆପଣଙ୍କ ନାଁରେ Warrent ଅଛି । ଥାନାକୁ ଚାଲନ୍ତୁ ।

ଗୀତା ୱାରେଣ୍ଟ ? କାହିଁକି ! କି ୱାରେଣ୍ଟ ?

ଅଶ୍ୱିନୀ ମୋର ଆଜ୍ଞା ଅପରାଧ କ'ଣ ଯେ, ମୁଁ ଥାନାକୁ ଯିବି ?

ପେ:ଅ ଆପଣଙ୍କ ନାଁରେ ଲାଞ୍ଚ ନେଉଥିବା ଅଭିଯୋଗ ଅଛି ।

ବିପ୍ଳବ ଲାଞ୍ଚ ! ଆପଣ ଏ କ'ଣ କହୁଛନ୍ତି ସାର୍ ! ଅଶ୍ୱିନୀ ପୁଣି ଲାଞ୍ଚ ଖାଉଛି । ନା, ଏଟା ମୋଟେ ସମ୍ଭବ ନୁହେଁ ।

ପୋ:ଅ କାହିଁକି ସମ୍ଭବ ନୁହେଁ ? ସାମାନ୍ୟ ଜଣେ କିରାନୀ ହେଇ, ଏତେ ସବୁ ସଂପତ୍ତି କଲେ କେମିତି ? ଏଇ ଦେଖନ୍ତୁ ଘର ସର୍ଚ୍ଚ କରିବା Order ମଧ୍ୟ ଅଛି ।

ଅଶ୍ୱିନୀ ଦେଖନ୍ତୁ ସାର୍ ! ଏ ସବୁ ମିଛ । କିଏ ହୁଏତ ମୋ ନାଆଁରେ ମିଛ ଖବର ଦେଇଛି ।

ଗୀତା ହଁ ଆଜ୍ଞା ! ଇୟେ ଜମା ମିଛ କହୁନାହାନ୍ତି । ଇୟେ କାହିଁକି ଲାଞ୍ଚ ଖାଇବେ ମ । ଯିଏ ଲାଞ୍ଚ ଖାଉଛନ୍ତି, ସିଏତ ଖୋଲା ପବନରେ ଆରାମରେ ବୁଲୁଛନ୍ତି । ତାଙ୍କର ତ କାହିଁ କେହି କିଛି କରିପାରୁନି । ଆଉ ଆମଭଳି ପେଚ୍ଚଖିଆକୁ ସମସ୍ତଙ୍କ ଆଖି ?

ବିପ୍ଳବ ଆପଣ ଭୁଲ୍ ଜାଗାକୁ ଆସିଛନ୍ତି ଆଜ୍ଞା ! ଦେଖନ୍ତୁ । ଏଇ ନାଆଁରେ ଆଉ କିଏ ଥାଇପାରେ ।

Digitized by srujanika@gmail.com

ପୋ:ଅ (ରାଗି) ମୁଁ ଭୁଲ୍‌ଜାଗାକୁ ଆସିନି କି ମୋର ଏତେ ସଫେଇ ଶୁଣିବା ଦରକାର ନାହିଁ । ଦୁର୍ନୀତି ନିବାରଣ ବିଭାଗର ମୁଁ ଜଣେ ଅଭିଜ୍ଞ ଅଫିସର । ଆଉ ଯା'ଙ୍କ ଅଫିସରୁ ଗୁପ୍ତ ତଦନ୍ତ କରି ଯେଉଁ କେତେଜଣଙ୍କୁ ଅଭିଯୁକ୍ତ କରାଯାଇଛି, ସେମାନଙ୍କ ଭିତରୁ ଏଇ ଅଶ୍ୱିନୀବାବୁ ହେଲେ ଜଣେ । ଏଥର ଭଲରେ ଭଲରେ ଥାନାକୁ ଚାଲନ୍ତୁ ।

ଗୀତା (କାନ୍ଦି) ପୋଲିସ୍‌ବାବୁ ! ତାଙ୍କୁ ଛାଡ଼ିଦିଅନ୍ତୁ । ତାଙ୍କର କିଛି ଦୋଷ ନାହିଁ । ସବୁ ଦୋଷ ମୋର । status ରେ ରହିବି ବୋଲି, ମୁଁ ତାଙ୍କୁ ଖରାପ କାମ କରିବାକୁ ଶିଖେଇଛି । ମୁଁ ତାଙ୍କୁ ଅବାଟରେ ନେଇଛି । ତାଙ୍କର କିଛି ଭୁଲ୍ ନାହିଁ ।

ବିପ୍ଳବ ଭାଉଜ ! ଏ ତମେ କ'ଣ କହୁଛ ?

ଗୀତା ହଁ ବିପ୍ଳବ ! ସବୁର ମୂଳ ମୁଁ । ତମେ ତାଙ୍କୁ ଏଥିରୁ ରକ୍ଷାକର । ସତରେ ଯଦି ସେ ଥାନାକୁ ଯାଆନ୍ତି ନା, ତାହେଲେ ତା'ହେଲେ ଆମେ ମାନଇଜ୍ଜତ ସବୁ ମାଟିରେ ମିଶିଯିବ । ଆମ ଭବିଷ୍ୟତ ଅନ୍ଧାର ହେଇଯିବ ।

ବିପ୍ଳବ କିନ୍ତୁ ମୁଁ କ'ଣ କରିପାରିବ ଯେ !

ଗୀତା ପୋଲିସବାବୁ ! ଆପଣ ଏ ଘରର ସବୁ ଜିନିଷପତ୍ର ନେଇଯାନ୍ତୁ । ମୋର ଏ ଶାଢ଼ୀ, ଗହଣା କିଛି ଦରକାର ନାହିଁ । ଖାଲି ଖାଲି ତାଙ୍କୁ ଛାଡ଼ିଦିଅନ୍ତୁ ମୋ ଦୋଷତ ମୁଁ ମାନିନେଉଛି । (ଭୋ ଭୋ କାନ୍ଦିଛି)

ବିପ୍ଳବ (ହସି) ଭାଉଜ ବହୁତ କାନ୍ଦିଲେଣି ଆଜ୍ଞା ! ନିଜ ଭୁଲ୍ ବି ବୁଝିପାରିଲେଣି । ବଡ଼ଲୋକ ହବାର ନିଶାଟା ଏକଦମ୍ ପାଣି ଫାଟିଗଲାଣି । ଏଥର ଅଶ୍ୱିନୀବାବୁଙ୍କୁ ଛାଡ଼ିଦିଅନ୍ତୁ ଆଜ୍ଞା ।

ପୋ:ଅ ଏଁ... ହଁ... ହଁ... । ଏଥର ମାଫ୍ କଲି ଆଉ ଦ୍ୱିତୀୟ ଥର ନୁହେଁ । (ବିପ୍ଳବ ଓ ଅଶ୍ୱିନୀ ଜୋର୍‌ରେ ହସିଛନ୍ତି) ଯେ ଆଜ୍ଞା ପୋଲିସ୍ ସାହେବ ।

Digitized by srujanika@gmail.com

ଗୀତା ଏଁ ! ତମେ ସବୁ ହସୁଛ ଯେ ! ଆଉ ଏ ପୋଲିସ୍... ।

ବିପ୍ଳବ ଏ ସବୁ ମିଛ । Drama ବୁଝିଲ ଭାଉଜ ! ତମ ମୁଣ୍ଡରୁ ବଡ଼ଲୋକ ହବାର ଭୂତଟାକୁ ଛଡ଼େଇବାକୁ ଏ ସବୁ ଆମର ଗୋଟେ ନାଟକ ।

ଅଶ୍ୱିନୀ ହଁ ଗୀତା ! ଏସବୁ ଆମର ଗୋଟେ ନାଟକ ! ଏ ଜିନିଷପତ୍ର ସବୁ ମିଛ । ଆଉ ଏ ପୋଲିସ୍ ଅଫିସର ବି !

ଗୀତା ଏଁ ! ଏ ସବୁ ମିଛ ।

ବିପ୍ଳବ ହଁ ଭାଉଜ ! ଅଶ୍ୱିନୀ ଯେତେବେଳେ ମତେ ସବୁକଥା କହିଲା, ମୁଁ ଏଇବାଟ ହିଁ ବାଛିନେଲି । ଏ ଜିନିଷ ସବୁ ଚିହ୍ନା ଲୋକଙ୍କଠାରୁ ଧାର୍‌ରେ ଆଣିଲୁ । ନହେଲେ ତମେ କ'ଣ କ'ଣ ନିଜ ଭୁଲ୍ ବୁଝିପାରିଥାନ୍ତ ?

ଗୀତା ତା'ହେଲେ ତମେ ସବୁ ମିଶି... ।

ଅଶ୍ୱିନୀ ହଁ ଗୀତା ! ତମେ ଯୋଉ ବୀରେନ୍ଦ୍ରବାବୁଙ୍କ ସ୍ତ୍ରୀଙ୍କ କଥାରେ ଭାସିଯାଇ ମତେ ଅନ୍ୟାୟ କରିବାକୁ ବାଧ କଲ, ସେଇ ବୀରେନ୍ଦ୍ରବାବୁ କାଲି arrest ହେଇଯାଇଛନ୍ତି । ପୋଲିସ୍ ତାଙ୍କ ଘର ରେଡ୍ କରି, ବହୁ ଜିନିଷ ପାଇଛନ୍ତି । ଜଣେ କିରାନୀ ପାଖରେ, ଏତେ ଟଙ୍କାର ବ୍ୟାଙ୍କ ବାଲାନ୍‌ସ । ଏତେ ସଂପତ୍ତି ରହିବା କ'ଣ ସମ୍ଭବ ?

ଗୀତା ଏ ! ସତେନା କ'ଣ ମ !

ବିପ୍ଳବ ତମେ କ'ଣ କାଲିର ପେପର୍ ପଢ଼ିନା କି ଭାଉଜ । ବୀରେନ୍ଦ୍ରବାବୁ ସମ୍ବଲପୁରରେ ଥିଲାବେଳେ ଗୁଡ଼ାଏ ପଇସା ଖାଇଥିଲେ । ତାଙ୍କ ପଛରେ C.B.I ଲାଗିଥିଲା । ଆଉ ସେଇ ଅନ୍ୟାୟର ଫଳ ଭୋଗିଲେ ।

ଅଶ୍ୱିନୀ ସେଇଥିପାଇଁ ମୁଁ ସବୁବେଳେ କହେ cut your coat according to your cloth., ଆମର ଯେତିକି ଅଛି ସେତିକିରେ ସନ୍ତୁଷ୍ଟ ରହିବା ଉଚିତ୍ ।

Digitized by srujanika@gmail.com

ବିପ୍ଳବ ବୁଝିଲ ଭାଉଜ ! କଳାଧନରେ ବଡ଼ଲୋକ ହବା ସହଜ । ଆଜି କାଲି ବଡ଼ଲୋକ ହବା, ଦାମୀ ଜିନିଷ ବ୍ୟବହାର କରିବାର ସ୍ୱପ୍ନ କିଏ ନ ଦେଖୁଛି କହିଲ ? ହେଲେ ତାର କୁପ୍ରଭାବ ଆମ ପିଲାଛୁଆ । ଆମ ସମାଜକୁ ଦୁର୍ନୀତିଗ୍ରସ୍ତ କରୁଛି । ଏଇ କଥାଟା ଯଦି ସମସ୍ତେ ବୁଝିପାରନ୍ତେ, ତା'ହେଲେ ଆମ ସମାଜରେ ଦୁର୍ନୀତି ବ୍ୟାପନ୍ତାନି ମ ।

ଗୀତା ମୋ ଭୁଲ୍ ମୁଁ ବୁଝିପାରିଛି । ହେଇ ଦେଖ, କାନମୋଡ଼ି ହଉଛି, ଏଭଳି ଭୁଲ୍ କାମ କରିବାକୁ ମୁଁ ଆଉ କେବେ ତମକୁ କହିବିନି ।

ଅଶ୍ୱିନୀ ଯା' ହେଉ ବିପ୍ଳବ ! ତୁ ଖାସା ଗୁଣିଆଟାଏ ମ ! ଏକା ଫୁଙ୍କାରେ, ତୋ ଭାଉଜ ମୁଣ୍ଡରୁ ବଡ଼ଲୋକ ହବାର ଡାହାଣୀଟାକୁ ଛଡ଼େଇଦେଲୁ ।

ବିପ୍ଳବ (ହସି) ଆରେ, ମତେ କ'ଣ ବୋଲି ଭାବିଛୁକି ? ଭାଉଜ ଷୋଳକଳା ଡାହାଣୀ ହେଲେ, ମୁଁ ବତିଶିକଳା ଗୁଣିଆଟି !!! (ସମସ୍ତେ ହସିଛନ୍ତି)

❒

Digitized by srujanika@gmail.com




ହରିବାବୁ

ସୁମିତ୍ରା

ବୁଟୁ

ମିଟୁ

ସୁନନ୍ଦା

ବସନ୍ତ

ମିତା

Digitized by srujanika@gmail.com

ଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏ

## ॥ ପ୍ରଥମ ଦୃଶ୍ୟ ॥

(ଘର ଭିତରୁ ୩/୪ ଜଣ ପିଲାଙ୍କର ପାଟିତୁଣ୍ଡ ଶୁଭୁଥାଏ । ଭିତରୁ ଡାକି ଡାକି ଆସିଲେ ହରିବାବୁ ।)

ହରିବାବୁ : ସୁମିତ୍ରା ! ସୁମିତ୍ରା ଆରେ ଶୁଣୁଛ ।

ସୁମିତ୍ରା (ଭିତରୁ) କ'ଣ କୁହ ! (ଆସିଲେ) କାହିଁକି ଡାକୁଛ ଶୁଣେ ?

ହରିବାବୁ : ୯ଟା ବାଜିଲାଣି । କ'ଣ ରୋଷେଇବାସ ସରିଲାଣି ? ଅଫିସ୍ time ଡେରି ହେଉଛି ।

ସୁମିତ୍ରା ଘରେ ଚାଉଳ ଛଡ଼ା କିଛି ନାହିଁ । କ'ଣ ରାନ୍ଧିବି ?

ହରିବାବୁ : ପରିବା ଆଣିବାକୁ ମୋ ପାଖରେ ପଇସା ନାହିଁ । ୩୧ ତାରିଖରେ ଦରମା ପାଇଲି । ଆଜି ୨ ତାରିଖ । ପଇସା ସବୁ ଶେଷ (ଦୀର୍ଘଶ୍ୱାସ ପକାଇ) କାହାକୁ ଧାର୍ ମାଗିବି ? ଅଫିସରେ ସମସ୍ତଙ୍କୁ ଠାରୁ ଶହେ ଦୁଇଶହ ଧାର୍ ଆଣିଛି । କରଜ ଶୁଝି ପାରୁନି । ଦେଖ ତମ ପାଖରେ ଯଦି କିଛି ଥାଏ ।

ସୁମିତ୍ରା ମୋ ପାଖରେ ? କ'ଣ ଯେ ତମେ କୁହ ? ମାସରେ କେତେଟା ଟଙ୍କା ତମେ ମତେ ହାତଖର୍ଚ୍ଚ ପାଇଁ ଦିଅ ? ଛିଣ୍ଡା ଶାଢ଼ୀ ପିନ୍ଧି ଦାଣ୍ଡକୁ ବାହାରି ହେଉନି ।

ହରିବାବୁ : ମୁଁ ଜାଣେ ସୁମିତ୍ରା । ହେଲେ କ'ଣ କରିବି ? ଆସନ୍ତା ମାସରେ ତମ ପାଇଁ ଶାଢ଼ୀ କିଣିଦେବି ।

ସୁମିତ୍ରା ମୋର ! ପୁଣି ଶାଢ଼ୀ କିଣା ? ସାନଝିଅଟା ଦୁଇଦିନ ହେଲା ଜ୍ୱରରେ ପଡ଼ିଛି । ଔଷଧ ଆଣିବାକୁ ପଇସା ନାଇଁ । ଜନ୍ମ ହେଲା ଦିନରୁ

Digitized by srujanika@gmail.com

କ୍ଷୀର ଟୋପାଏ ପାଇଲାନି । ପାଣି ଟୋପାଏ ପିଇ କେମିତି ବଞ୍ଚିଛି ଥରେ ଭାବିଛ ?

ହରିବାବୁ : ସୁମିତ୍ରା !

ସୁମିତ୍ରା ମିନୁର ଫ୍ରକ୍ ଚିରିଗଲାଣି ଯେ ୧୫ ଦିନ ହେବ ତା'ର ସ୍କୁଲ୍ ବନ୍ଦ, ବୁଟୁର ପରୀକ୍ଷା ଦୁଇଦିନ ରହିଲା । ପରୀକ୍ଷା ଫିସ୍ ଦେଇପାରୁନି ବୋଲି କାନ୍ଦୁଛି । ଆଉ ମିଟୁ form fillup କରି ବୋଲି ପାଗଳାଙ୍କ ଭଳି ହେଉଛି । ଆଜି ଟୀନାର ଜନ୍ମଦିନ । ଠାକୁରଙ୍କ ପାଖରେ ଭୋଗ କରିବାକୁ ୫ଟା ପଇସା ସୁଦ୍ଧା ନାହିଁ । ଅଧାପେଟ ଖାଇ ଛୁଆଗୁଡ଼ା କି ଡହଳବିକଳ ହେଉଛନ୍ତି... ମାଆ ହେଇ ଏ ଦୁଃଖ ମୁଁ ସହିପାରୁନି... (କାନ୍ଦିଛନ୍ତି)

ହରିବାବୁ : ଥାଉ ସୁମିତ୍ରା ! ଥାଉ ସବୁଦିନେ ଏମିତି ଗୁଡ଼ାଏ ଅଭାବ ଅନଟନର ପ୍ରତିଛବି ଦେଖି ଦେଖି ମୁଁ ପଥର ପାଲଟିଗଲିଣି । ମୁଁ କ'ଣ କରିପାରିବି ସୁମିତ୍ରା । ସାମାନ୍ୟ କେତେଟା ଟଙ୍କାରେ ଏତେବଡ଼ ପରିବାର ଚଳେଇବି କେମିତି ଭାବିପାରୁନି । ମତେ କିଛି କୁହନା ! କି ଅଭିଶପ୍ତ ଭାଗ୍ୟ ନେଇ ଛୁଆଗୁଡ଼ାକ ଜନ୍ମ ହେଇଥିଲେ କେଜାଣି, ବାପା ହେଇ ମୁଁ ସେମାନଙ୍କ ପାଇଁ କିଛି କରିପାରୁନି ।

ସୁମିତ୍ରା (ଭିତରୁ ରୋଗିଣା ଝିଅର କାନ୍ଦ ଶୁଭୁଛି) ହେଇ ଟୀନୁ କାନ୍ଦିଲାଣି ।

ହରିବାବୁ : ତମେ ଯାଅ ସୁମିତ୍ରା । ମୁଁ ଅଫିସ୍ ଯାଉଛି । ଫେରିବା ବେଳକୁ ଦେଖେ ଯଦି କିଛି ଯୋଗାଡ଼ ହେଇପାରେ ।

ସୁମିତ୍ରା ଖାଲି ପେଟରେ ଏମିତି କେତେଦିନ ଅଫିସ୍ କାମ କରିବ ? ତମର ଯଦି କିଛି ହୁଏ... ।

ହରିବାବୁ : ମୋ ଚିନ୍ତା କରନା ସୁମିତ୍ରା । ଆଚ୍ଛା ମୁଁ ଆସୁଛି...

(ଅନ୍ଧାର)

Digitized by srujanika@gmail.com

## ॥ ଦ୍ୱିତୀୟ ଦୃଶ୍ୟ ॥

ବୁଟୁ ବୋଉଲୋ ! ଭାରି ଭୋକ । କ'ଣ ଦି'ଟା ଖାଇବାକୁ ଦେ ।

ସୁମିତ୍ରା ନେ ! ଭାତ ଦି'ଟା ଖାଇଦେ ।

ବୁଟୁ ଖାଲି ଭାତ ମୁଁ ଖାଇବିନି ।

ସୁମିତ୍ରା ଛିଃ ! ଅଝଟ ହ'ନା । ବାପା ଅଫିସରୁ ଫେରନ୍ତୁ ଭଲ ଜିନିଷ ଆଣିବେ ଖାଇବୁ ।

ବୁଟୁ ବୋଉ ! ତୁ ଭାରି ମିଛୁଆ । ସବୁଦିନେ ଆମକୁ ମିଛ କହି ଭୁଲେଇ ଦଉଛୁ । ହେଇ ଦେଖୁନୁ । ବସନ୍ତ ମଉସା ତାଙ୍କ ମିତା ଆଉ ବାପି ପାଇଁ କେମିତି ପ୍ରତିଦିନ କେତେ ଜିନିଷ ଆଣୁଛନ୍ତି । ବାପା ତ କିଛି ଆଣୁନାହାନ୍ତି । ସ୍କୁଲ୍ ଗଲାବେଳେ ଦଶ ପଇସା ବି ଦଉନାହାନ୍ତି ।

ସୁମିତ୍ରା ବାପା ସବୁ ଆଣିବେରେ ବୁଟୁ । ମୀନୁର ଫ୍ରକ୍ । ତୋର ଦରମା କାଲି ଦେଇଦେବୁ ।

ମିଟୁ ବୋଉ ! ମୋର Form fillup ପାଇଁ ୧୦୦ ଟଙ୍କା କାଲି ଯେମିତି ହେଉ ଦେବୁ । ନ ହେଲେ ମୁଁ ଘରଛାଡ଼ି ପଳେଇବି ।

(ମିଟୁ ଓ ବୁଟୁର ପରସ୍ପର ଭିତରେ କଳି କରିଛନ୍ତି ।)

ବୁଟୁ ନାଇଁ, ମୋର ଆଗ...

ମିଟୁ ନାଇଁ ମୋର...

ସୁମିତ୍ରା (ପାଟିକରି ଉଠିଛନ୍ତି) ଓହୋ ! ଚୁପକର ! ଚୁପକର କହୁଛି ମୋ ପାଖରେ ତ କିଛି ନାହିଁ । ଆଉ କ'ଣ ମୁଁ ପରଦୁଆରେ ବାସନ ମାଜିବି ? ଟିକି ଛୁଆଟା ଜ୍ୱର ବାଉଳାରେ କେମିତି ହଉଛି ଦେଖୁଛ । ମୁଁ କ'ଣ କରିବି... ମୁଁ ତମର ହତଭାଗୀ ମାଆରେ (କାନ୍ଦିଛନ୍ତି) ! ମୁଁ କିଛି ଦେଇପାରୁନି । କିଛି ଦେଇପାରିବିନି ତମମାନଙ୍କୁ... ।

(ସମସ୍ତେ ପାଟି ବନ୍ଦ କରି ଦେଇଛନ୍ତି)

Digitized by srujanika@gmail.com

ମିଟୁ : ବୋଉ ! ତୁ କାନ୍ଦେନା । ଆମେ ଆଉ ତତେ କିଛି ମାଗିବୁନି ଆସରେ... ବୁଟୁ, ମିନୁ... ମୁଁ ତମକୁ ଗୋଟିଏ ବଢ଼ିଆ ଗପ କହିବି ।

## ।। ତୃତୀୟ ଦୃଶ୍ୟ ।।

(ବସନ୍ତବାବୁଙ୍କ ଘର । ସ୍ତ୍ରୀ ସୁନନ୍ଦା ସହିତ କଥା ହେଉଥିଲେ ବସନ୍ତବାବୁ)

ସୁନନ୍ଦା ହଇ ହେ ! ଶୁଣୁଛଟି । ହରିବାବୁଙ୍କ ସ୍ତ୍ରୀ କେମିତି ବିକଳ ହେଇ କାନ୍ଦୁଛନ୍ତି । ଛୁଆଗୁଡ଼ାକ ଭୋକଉପାସରେ କେମିତି ଛଟପଟ ହେଉଛନ୍ତି । ଆଉ ତାଙ୍କ ସାନଝିଅ ଚୀନା ଜ୍ୱରରେ ପଡ଼ିଛି ଯେ, ଔଷଧ ଟିକେ ବି ଦଉନାହାନ୍ତି । କେମିତିକା ବାପାମାଆ କେଜାଣି ।

ବସନ୍ତ ସୁନନ୍ଦା ! ମଣିଷ ଜାଣିଶୁଣି ଭୁଲ୍ କରେ । ସେଇ ଭୁଲ୍‌ର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ନିଜେ ତ ଛଟପଟ ହୁଏ ତା' ସହିତ ଆତ୍ମୀୟସ୍ୱଜନଙ୍କୁ ମଧ ଯନ୍ତ୍ରଣା ଦିଏ । ସେଇ ଭୁଲ୍ ହରିବାବୁ କରିଛନ୍ତି । ଯନ୍ତ୍ରଣାର ଆଘାତ ନିଜେ ସହୁଛନ୍ତି । ଫୁଲ ପରି ନିଷ୍ପାପ ଛୁଆ କେତେଟାଙ୍କୁ ବି ଛଟପଟ କରୁଛନ୍ତି ।

ସୁନନ୍ଦା ମିତା- ବାପି ଆମର ଦୁଇଟି ରତ୍ନ । ମୁଁ ଯଦି ସୁମିତ୍ରାଙ୍କ ଭଳି ବୋକାମି କରିଥାନ୍ତି ଆଜି କି ହିନସ୍ତା ହେଉଥାନ୍ତି ।

(ଭିତରୁ ମିତା କହିଛି)... ବୋଉ ! ବାପି ଆଉ ମୁଁ ଦାଣ୍ଡ ଘରେ ବୁଟୁ ସାଙ୍ଗରେ ଖେଳୁଛୁ । ଆମକୁ ଖୋଜିବନି ।

ସୁନନ୍ଦା ହଉ ! ଖେଳୁଥାଅ । ତମେ ଆସିଲ ଜଳଖିଆ ଟିକେ ଖାଇଦେବ । କୁଆଡ଼େ ଯିବ କହୁଥିଲ ପରା ?

ବସନ୍ତ ହଁ ଚାଲ । ମୁଁ ଟିକେ ପ୍ରଶାନ୍ତ ବାବୁଙ୍କ ପାଖକୁ ଯିବି ।

(ମିଟୁ ଓ ବୁଟୁ)

ମିତା ବୁଟୁ ! ତୁ କାହିଁକି ମୁହଁ ଶୁଖାଇଛୁ । ଖେଳିବାକୁ ଆସୁନାହିଁ କ'ଣ ଦେହ ଭଲନାହିଁ । ଆଜି ସ୍କୁଲକୁ ଯାଇନଥିଲୁ ଯେ... ।

Digitized by srujanika@gmail.com

ବୁଟୁ : ନାଇଁଲୋ ମିତା ! ଭାରି ଭୋକ ହେଉଛି । ବୋଉ କିଛି ଖାଇବାକୁ ଦେଲାନି । ପରୀକ୍ଷା ଫିସ୍ ଦେବାକୁ ପଇସା ନାହିଁ, ସେଥିପାଇଁ ସ୍କୁଲ ଗଲିନି ।

ମିତା କାହିଁକି ? ତମ ବାପା କ'ଣ ତମପାଇଁ କିଛି ଆଣନ୍ତିନି ? ହେଇ ଦେଖ, ଆମର କେତେ ଖେଳନା... ଏଗୁଡ଼ାକ ସବୁ ବାପା ମୋ ପାଇଁ ଆଉ ବାପି ପାଇଁ ଆଣି ଦେଇଛନ୍ତି ।

ବୁଟୁ ଆମର କିଛି ନାହିଁ ଲୋ !

ମିତା ଛିଃ ! ତମେ ଏତେ ମଇଳା ସାର୍ଟ ପିନ୍ଧିଛ । ତମର କ'ଣ ଆଉ Dress ନାହିଁ ?

ବୁଟୁ ନାଇଁ ମିତା । ଆମର ସମସ୍ତଙ୍କର ଏଇ ଗୋଟେ ଗୋଟେ dress ।

ମୀତା ତମ ବାପା ଭାରି ଖରାପ, ନୁହେଁ ବୁଟୁ ।

ବୁଟୁ ହଁ ଲୋ ମିତା । ତମ ବାପାଙ୍କର ବହୁତ ପଇସା । ଆମର ପଇସା ନାହିଁ । କିଛି ନାହିଁ । ଏ ମିତା ମତେ କ'ଣ ଖାଇବାକୁ ଦେ । ଭାରି ଭୋକ...

ମିତା ତମେ ବସିଥାଅ । ମୁଁ ବୋଉଙ୍କ ପାଖରୁ cake ନେଇ ଆସେ । (ଚାଲିଯାଇଛି)

(ବୁଟୁକୁ ଖୋଜି ଖୋଜି ମିଟୁ ଆସିଛି)

ମିଟୁ ବୁଟୁ ! ଘରକୁ ଚାଲ୍ ବାପ ଆସିଲେଣି । (ବୁଟୁ ଚାଲିଯାଇଛି । ଟେବୁଲ୍ ଉପରେ ଥିବା ଘଣ୍ଟା ଉପରେ ଦୃଷ୍ଟି ପଡ଼ିଛି ମିଟୁର । ମିଟୁ ମନରେ ହଠାତ୍ ଭାବାନ୍ତର ସୃଷ୍ଟି ହେଇଛି ।) ଇସ୍ କେତେ ଦାମୀ ଜିନିଷ ମଉସାଙ୍କ ଘରେ । ତାଙ୍କ କୁକୁର ମାଂସ ଖାଉଛି । ଆଉ ଆମେ ଶୁଖିଲା ରୁଟି ଖଣ୍ଡେ ପାଉନୁ । (ମନ ଭିତରୁ ଯେମିତି ଶୁଭିଛି) ଏ ମିଟୁ । ନେଇଯା ଏ ଘଣ୍ଟା ଯା'ର ଦାମ୍ ୫୦୦ ଟଙ୍କାରୁ କମ୍ ହେବନି । ତୋର Form fill up ହେଇପାରୁନି । ଭୋକରେ ଛଟପଟ ହେଉଛି ନେଇଯା'... ।

Digitized by srujanika@gmail.com

ମିଟୁ : ବୋଉ ! ତୁ କାନ୍ଦେନା । ଆମେ ଆଉ ତତେ କିଛି ମାଗିବୁନି ଆସରେ... ବୁଟୁ, ମିନୁ... ମୁଁ ତମକୁ ଗୋଟିଏ ବଢ଼ିଆ ଗପ କହିବି ।

## ॥ ତୃତୀୟ ଦୃଶ୍ୟ ॥

(ବସନ୍ତବାବୁଙ୍କ ଘର । ସ୍ତ୍ରୀ ସୁନନ୍ଦା ସହିତ କଥା ହେଉଥିଲେ ବସନ୍ତବାବୁ)

ସୁନନ୍ଦା ହଇ ହେ ! ଶୁଣୁଛଟି । ହରିବାବୁଙ୍କ ସ୍ତ୍ରୀ କେମିତି ବିକଳ ହେଇ କାନ୍ଦୁଛନ୍ତି । ଛୁଆଗୁଡ଼ାକ ଭୋକଉପାସରେ କେମିତି ଛଟପଟ ହେଉଛନ୍ତି । ଆଉ ତାଙ୍କ ସାନଝିଅ ଚୀନା ଜ୍ୱରରେ ପଡ଼ିଛି ଯେ, ଔଷଧ ଟିକେ ବି ଦଉନାହାନ୍ତି । କେମିତିକା ବାପାମାଆ କେଜାଣି ।

ବସନ୍ତ ସୁନନ୍ଦା ! ମଣିଷ ଜାଣିଶୁଣି ଭୁଲ୍ କରେ । ସେଇ ଭୁଲ୍‌ର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ନିଜେ ତ ଛଟପଟ ହୁଏ ତା' ସହିତ ଆତ୍ମୀୟସ୍ୱଜନଙ୍କୁ ମଧ ଯନ୍ତ୍ରଣା ଦିଏ । ସେଇ ଭୁଲ୍ ହରିବାବୁ କରିଛନ୍ତି । ଯନ୍ତ୍ରଣାର ଆଘାତ ନିଜେ ସହୁଛନ୍ତି । ଫୁଲ ପରି ନିଷ୍ପାପ ଛୁଆ କେତେଟାଙ୍କୁ ବି ଛଟପଟ କରୁଛନ୍ତି ।

ସୁନନ୍ଦା ମିତା- ବାପି ଆମର ଦୁଇଟି ରତ୍ନ । ମୁଁ ଯଦି ସୁମିତ୍ରାଙ୍କ ଭଳି ବୋକାମି କରିଥାନ୍ତି ଆଜି କି ହିନସ୍ଥା ହେଉଥାନ୍ତି ।

(ଭିତରୁ ମିତା କହିଛି)... ବୋଉ ! ବାପି ଆଉ ମୁଁ ଦାଣ୍ଡ ଘରେ ବୁଟୁ ସାଙ୍ଗରେ ଖେଳୁଛୁ । ଆମକୁ ଖୋଜିବନି ।

ସୁନନ୍ଦା ହଉ ! ଖେଳୁଥାଅ । ତମେ ଆସିଲ ଜଳଖିଆ ଟିକେ ଖାଇଦେବ । କୁଆଡ଼େ ଯିବ କହୁଥିଲ ପରା ?

ବସନ୍ତ ହଁ ଚାଲ । ମୁଁ ଟିକେ ପ୍ରଶାନ୍ତ ବାବୁଙ୍କ ପାଖକୁ ଯିବି ।

(ମିଟୁ ଓ ବୁଟୁ)

ମିତା ବୁଟୁ ! ତୁ କାହିଁକି ମୁହଁ ଶୁଖାଇଛୁ । ଖେଳିବାକୁ ଆସୁନାହିଁ କ'ଣ ଦେହ ଭଲନାହିଁ । ଆଜି ସ୍କୁଲକୁ ଯାଇନଥିଲୁ ଯେ... ।

Digitized by srujanika@gmail.com

ବୁଟୁ : ନାଇଁଲୋ ମିତା ! ଭାରି ଭୋକ ହେଉଛି । ବୋଉ କିଛି ଖାଇବାକୁ ଦେଲାନି । ପରୀକ୍ଷା ଫିସ୍ ଦେବାକୁ ପଇସା ନାହିଁ, ସେଥିପାଇଁ ସ୍କୁଲ ଗଲିନି ।

ମିତା କାହିଁକି ? ତମ ବାପା କ'ଣ ତମପାଇଁ କିଛି ଆଣନ୍ତିନି ? ହେଇ ଦେଖ, ଆମର କେତେ ଖେଳନା... ଏଗୁଡ଼ାକ ସବୁ ବାପା ମୋ ପାଇଁ ଆଉ ବାପି ପାଇଁ ଆଣି ଦେଇଛନ୍ତି ।

ବୁଟୁ ଆମର କିଛି ନାହିଁ ଲୋ !

ମିତା ଛିଃ ! ତମେ ଏତେ ମଇଳା ସାର୍ଟ ପିନ୍ଧିଛ । ତମର କ'ଣ ଆଉ Dress ନାହିଁ ?

ବୁଟୁ ନାଇଁ ମିତା । ଆମର ସମସ୍ତଙ୍କର ଏଇ ଗୋଟେ ଗୋଟେ dress ।

ମୀତା ତମ ବାପା ଭାରି ଖରାପ, ନୁହେଁ ବୁଟୁ ।

ବୁଟୁ ହଁ ଲୋ ମିତା । ତମ ବାପାଙ୍କର ବହୁତ ପଇସା । ଆମର ପଇସା ନାହିଁ । କିଛି ନାହିଁ । ଏ ମିତା ମତେ କ'ଣ ଖାଇବାକୁ ଦେ । ଭାରି ଭୋକ...

ମିତା ତମେ ବସିଥାଅ । ମୁଁ ବୋଉଙ୍କ ପାଖରୁ cake ନେଇ ଆସେ । (ଚାଲିଯାଇଛି)

(ବୁଟୁକୁ ଖୋଜି ଖୋଜି ମିଟୁ ଆସିଛି)

ମିଟୁ ବୁଟୁ ! ଘରକୁ ଚାଲ୍ ବାପ ଆସିଲେଣି । (ବୁଟୁ ଚାଲିଯାଇଛି । ଟେବୁଲ୍ ଉପରେ ଥିବା ଘଣ୍ଟା ଉପରେ ଦୃଷ୍ଟି ପଡ଼ିଛି ମିଟୁର । ମିଟୁ ମନରେ ହଠାତ୍ ଭାବାନ୍ତର ସୃଷ୍ଟି ହେଇଛି ।) ଇସ୍ କେତେ ଦାମୀ ଜିନିଷ ମଉସାଙ୍କ ଘରେ । ତାଙ୍କ କୁକୁର ମାଂସ ଖାଉଛି । ଆଉ ଆମେ ଶୁଖିଲା ରୁଟି ଖଣ୍ଡେ ପାଉନୁ । (ମନ ଭିତରୁ ଯେମିତି ଶୁଭିଛି) ଏ ମିଟୁ । ନେଇଯା ଏ ଘଣ୍ଟା ଯା'ର ଦାମ୍ ୫୦୦ ଟଙ୍କାରୁ କମ ହେବନି । ତୋର Form fill up ହେଇପାରୁନି । ଭୋକରେ ଛଟପଟ ହେଉଛି ନେଇଯା'... ।

Digitized by srujanika@gmail.com

(ଅନ୍ୟସ୍ୱର) ଚୋରି କରିବା ପାପ । ମହାପାପ । ଧରାପଡ଼ିଲେ କି ଅପମାନ । କି ଲଜ୍ଜ୍ୟା ଛିଃ... ଛିଃ...

(ମନର ସ୍ୱର) ତୁ ତ ଖୁସିରେ ଚୋରି କରୁନୁ । ନିଜର ନିଜ ପରିବାରର କଷ୍ଟ ଦୂର କରିବା ପାଇଁ ଚୋରି କରିବା ପାପ ନୁହେଁ ।

(ଶେଷରେ ଘଣ୍ଟାଟି ନେଇ ମିଟୁ ଚାଲିଯାଇଛି)

(ଆସିଛି ମିତା) ଆରେ ମିଟୁଭାଇ ! ସେଇଟା କ'ଣ Pocket ରେ ପୂରାଉଛ ? ଶୁଣ ଶୁଣ ମିଟୁଭାଇ ।

(ଅନ୍ଧାର)

## ।। ଚତୁର୍ଥ ଦୃଶ୍ୟ ।।

(ହରିବାବୁଙ୍କ ଘର)

ସୁନନ୍ଦା ଛିଃ ! ଛିଃ ଏତେ ବକଟେ ପିଲା । ତା'ର ପୁଣି କି ସାହସ । ଆଜିଠାରୁ ଚୋରି କରିବା ଶିଖିଲାଣି ।

ସୁମିତ୍ରା ମିଟୁ ଶେଷରେ ତୁ ଏଇଆ କଲୁ ? ବାପାମା'ଙ୍କର ନାଁକୁ ମାଟିରେ ମିଶେଇଦେଲୁ ।

ହରିବାବୁ : କୁଳାଙ୍ଗାର ! ବାହାରି ଯା' ମୋ ଘରୁ । ତୋ ମୁହଁ ମୁଁ ଦେଖିବାକୁ ଚାହେଁନା ।

ସୁନନ୍ଦା ଏବେ ଶାସନ କରି ଲାଭ କ'ଣ ଅଛି ? ଯେଉଁ କୁକୁର ଅଇଁଠାପତ୍ର ଚାଟେ, ତାକୁ ଘରେ ବାନ୍ଧି ରଖିଲେ ସେ କ'ଣ ତା' ପ୍ରକୃତି ଛାଡ଼ିଦେବ ?

ହରିବାବୁ : ତତେ ମୁଁ ଆଜି ମାରିଦେବି । ଦେ ଘଣ୍ଟା ଦେ ତମର ରକ୍ତକୁ ପାଣି କରି ଦିନରାତି ଖଟୁଛି । ତା'ର ଫଳ କ'ଣ ଏଇଆ (ମାରିଛନ୍ତି, ମିଟୁ କାନ୍ଦିଛି)

ମିଟୁ ମତେ ଛାଡ଼ିଦିଅ । ମତେ ଛାଡ଼ିଦିଅ ବାପା, ଆଉ ଏଭଳି ଭୁଲ୍ କରିବିନି । ଭୋକ କଷ୍ଟ ସହି ନପାରି... ଆଃ...

Digitized by srujanika@gmail.com

ହରିବାବୁ : ନା, ତତେ ମାରିଦେଲେ ମୁଁ ଯାଇ ଶାନ୍ତିପାଇବି । (ହରିବାବୁ ମାରୁଛନ୍ତି । ମିଟୁ ବିକଳ ହେଇ ଚିତ୍କାର କରୁଛି, ଆସିଛନ୍ତି ବସନ୍ତବାବୁ ।)

ବସନ୍ତ ଆରେ, ଏ କ'ଣ କରୁଛନ୍ତି । ଛାଡ଼ିଦିଅ ମିଟୁକୁ । ନିଜ ଭୁଲକୁ ପିଲାଟା ଉପରେ ଲଦି ଦେଉଛନ୍ତି କାହିଁକି ?

ହରିବାବୁ : ବସନ୍ତବାବୁ ।

ବସନ୍ତ ଆପଣ ଜଣେ ଶିକ୍ଷିତ ଲୋକ ହେଇ ଅନ୍ଧ ଭଳି ବିଚାର କରୁଛନ୍ତି । ପିଲାଙ୍କୁ ଗଢ଼ିବାର ପ୍ରଥମ ଦାୟିତ୍ୱ ହେଉଛି ବାପାମାଆଙ୍କର, ତା'ପରେ ସମାଜର ।

ହରିବାବୁ : ମୁଁ କ'ଣ ତାକୁ ଉପଯୁକ୍ତ ମଣିଷ କରି ଗଢ଼ିବାକୁ ଚେଷ୍ଟା କରିନି ? ମୁଁ କ'ଣ ତାକୁ ଚୋରି କରିବା ଶିଖେଇଛି । ହେଲେ ଏ କୁଳାଙ୍ଗାର...

ବସନ୍ତ ମୁଁ ବୁଝୁଛି ହରିବାବୁ । ସବୁ ବାପାମାଆ ନିଜ ସନ୍ତାନର ମଙ୍ଗଳ କାମନା କରନ୍ତି । କିନ୍ତୁ ଉପଯୁକ୍ତ ବୁଝାମଣାର ଅଭାବରୁ ଦିଅଁ ଗଢୁ ଗଢୁ ମାଙ୍କଡ଼ ଗଢ଼ି ବସନ୍ତି । ଏଥିରେ ପିଲାର କି ଦୋଷ ଅଛି ?

ହରିବାବୁ : ବସନ୍ତ ବାବୁ !

ବସନ୍ତ ହଁ ହରିବାବୁ ! କେବଳ ଜନ୍ମ ଦେଇଦେଲେ ବାପାମାଙ୍କ କର୍ତ୍ତବ୍ୟ ସରିଯାଏନା । ଶାସନ କରିବା ଅର୍ଥ ଗୁଡ଼ାଏ ଶୁଷ୍କ ଉପଦେଶ, ଭୟ ଦେଖାଇବା ନୁହେଁ । ଉପଯୁକ୍ତ ଖାଦ୍ୟ, ପୋଷାକ, ଶିକ୍ଷା ଦେଇ ନ ପାରିଲେ ପିଲାଟି ଅମଣିଷ ପାଲଟିଯିବା ସ୍ୱାଭାବିକ ।

ହରିବାବୁ : ମତେ ଲଜ୍ଜା ଦିଅନ୍ତୁନି । ସାମାନ୍ୟ କିରାଣୀ ମୁଁ, କେତେଟା ଟଙ୍କାରେ ଏତେ ବଡ଼ ପରିବାର ଚଳେଇବା ମୋ ପକ୍ଷରେ ସମ୍ଭବ ହେଇପାରୁନି । ତଥାପି ମୁଁ ଦିନରାତି ଖଟୁଛି । ମୁଁ ଜାଣିନଥିଲି ମିଟୁ ମୋରି ପୁଅ ହେଇ... ।

ବସନ୍ତ ହରିବାବୁ ! ଏଥିପାଇଁ ଆପଣ ନିଜେ ହିଁ ଦାୟୀ... ଆପଣଙ୍କର ଯଦି ଛୋଟ ପରିବାରଟିଏ ହୋଇଥାନ୍ତା । ତେବେ ଆପଣ ଆଜି ଏ ଅବସ୍ଥା

Digitized by srujanika@gmail.com

ଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇଇ

ଭୋଗ କରୁ ନଥାନ୍ତେ । Man is the servo of stomach ହରିବାବୁ । ଅଭାବ ଅସୁବିଧା ହିଁ ଭୁଲ୍ ବାଟକୁ ଟାଣିନିଏ । ମିଟୁ ତାହାହିଁ କରିଛ ।

ହରିବାବୁ : ବସନ୍ତବାବୁ । ମୋ ଭୁଲ୍ ମୁଁ ବୁଝିପାରୁଛି ।

ବସନ୍ତ ଯେଉଁ ଭୁଲ୍‌ଟା ଆଜି ଉପଲବ୍ଧି କଲେ, ବହୁ ପୂର୍ବରୁ ତାହା ବୁଝିବା ଉଚିତ ଥିଲା । ଏଇ ଭୁଲ୍ ଯଦି ସମାଜର ପ୍ରତ୍ୟେକ ବ୍ୟକ୍ତି ହୃଦୟଙ୍ଗମ କରିପାରନ୍ତେ, ତେବେ ଅଭାବ ଅନଟନ ଅଶାନ୍ତି ରହନ୍ତାନି । ମିଟୁ ଭଳି କେତେ ବାଳକ... କେତେ ଯୁବକ ଅସାମାଜିକ ହୁଅନ୍ତେନି ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଅନ୍ଧକାର ହୁଅନ୍ତାନି ।

ସୁମିତ୍ରା ଆପଣ ଠିକ୍ କହିଛନ୍ତି । ଏଥିପାଇଁ ମୁଁ ମଧ୍ୟ ଦାୟୀ । ମୋରି ଦୂରଦର୍ଶିତାର ଅଭାବ ଯୋଗୁ ମୁଁ ଆଜି ନିଷ୍ପାପ ଛୁଆଗୁଡ଼ିକୁ କଳଙ୍କିତ କରିଛି । ମାଆ ହେଇ ମାତୃତ୍ୱର ପ୍ରକୃତ ଅର୍ଥ ବୁଝିପାରିନି ।

ସୁନନ୍ଦା ଏବେ ବୁଝିଲ ତ ! ଆଗାମୀ ବଂଶଧରଙ୍କ ପାଇଁ ଆମେ ନୂତନ ଆଦର୍ଶ ଗଢ଼ି ଦେଇଯିବା । ସେମାନେ ନିଜର ସର୍ବନାଶକୁ ସହଜରେ ଏଡ଼ାଇ ଦେଇପାରିବେ । ଆମେ ଦୁଇ ଆମର ଦୁଇ । ଛୋଟ ପରିବାର ହିଁ ସୁଖୀ ପରିବାର, ଏହାହିଁ ଆମର ଆଦର୍ଶ । ଏଥିରେ ବ୍ୟକ୍ତିର ମଙ୍ଗଳ, ସମାଜର ବି ମଙ୍ଗଳ । ନା କ'ଣ କହୁଛ ସୁମିତ୍ରା ଦେବୀ ?

(ଅନ୍ଧାର)



Digitized by srujanika@gmail.com



# ଇଏ କ'ଣ ହେଲା ?

Digitized by srujanika@gmail.com




| | |
|---|---|
| ସରୋଜ | ପୋଲିସ୍ ଇନସ୍‌ପେକ୍ଟର |
| ଶଙ୍କର | କନେଷ୍ଟବଳ |
| ସୁଶୀଳା | ସୁନୀତାର ମାଆ |
| ଶାନ୍ତି | ସୁଶାନ୍ତର ମାଆ |
| ସୁରଥ | ସୁଶୀଳାର ଭାଇ |
| ଶିବ | ଶାନ୍ତିଦେବୀଙ୍କ ଭାଇ |
| ସୁଶାନ୍ତ | କଲେଜ ପଢୁଆ ପୁଅ |
| ସୁନୀତା | କଲେଜ ପଢୁଆ ଝିଅ |

Digitized by srujanika@gmail.com

## ॥ ପ୍ରଥମ ଦୃଶ୍ୟ ॥

ସ୍ଥାନ : ପୋଲିସ୍ ଷ୍ଟେସନ୍ । କନେଷ୍ଟବଲ ଶଙ୍କର ଆସବାବପତ୍ର ଝଡ଼ାଝଡ଼ି କରୁଥାଏ । ମନ ଖୁସିରେ ଗୁଣୁଗୁଣୁ ସ୍ୱରରେ ଗୀତ ଗାଉଥାଏ । ହ୍ୟାଲୋ (ସେ ପଟୁ ଶୁଭୁଥାଏ, ପାରାଦ୍ୱୀପ ଏକ୍ସପ୍ରେସ୍ କେତେବେଳେ ଛାଡ଼ିବ ? ଏପଟୁ ହ୍ୟାଲୋ ! ଆପଣ କେଉଁଠିକୁ ଫୋନ୍ କରୁଛନ୍ତି ? ସେପଟୁ : ରେଳଷ୍ଟେସନ୍ । ଏପଟୁ : ଇଏ ଆଜ୍ଞା ରେଳ ଷ୍ଟେସନ୍ ନୁହେଁ, ପୋଲିସ୍ ଷ୍ଟେସନ୍ । (ରାଗରେ ଫୋନ୍‌କୁ ଥୋଇଦେଇ କହିଲା) ଧେତ୍‌ତେରିକି, ମୁଁ ଭାବିଲି କିଛି ଗୋଟେ କେସ୍ ଆସି ପହଞ୍ଚିବ (ଆସିଛନ୍ତି ଇନ୍‌ସ୍‌ପେକ୍ଟର ସରୋଜ ମହାପାତ୍ର) । ସେ ମଧ ଖୁବ୍ ଖୁସି ଥିବା ପରି ଜଣା ପଡୁଥାନ୍ତି । ଗାଡ଼ିର ଚାବି ଘୁରାଇ ଘୁରାଇ ପ୍ରବେଶ କଲେ ଓ ଚେୟାର୍ ଉପରେ ବସିଲେ ।

ସରୋଜ : ଆରେ, କଥା କ'ଣ ଶଙ୍କର । ଆଜି ତ ଭାରି ଖୁସି ଥିବା ପରି ଜଣାପଡୁଛୁ ।

ଶଙ୍କର (ସାଲ୍ୟୁଟ୍ କରି) ନାଁ ମ ସାର୍ । ଏମିତି ଟିକେ... । ସତ କହିବି ସାର୍ । ଆପଣ କିନ୍ତୁ ଆଜି ପୂରା ହାପି ମୁଡ୍‌ରେ ଅଛନ୍ତି ।

ସରୋଜ : ହଉ ଗଲୁ ଗଲୁ । ଦି' କପ୍ ଷ୍ଟ୍ରଙ୍ଗ କଫି ନେଇ ଆସିବୁ ।

ଶଙ୍କର ଏଁ ଦି' କପ୍ ଷ୍ଟ୍ରଙ୍ଗ କଫି । ଆପଣ କ'ଣ ସାର୍ ଦି'କପ୍ ପିଇବେ ?

ସରୋଜ : ନାଇଁ ମ ତୋର କପେ, ମୋର କପେ । ବୁଝିଲୁ ।

ଶଙ୍କର (ହସି ହସି ମୁଣ୍ଡ କୁଣ୍ଡେଇ) କଥା କ'ଣ ସାର୍ । ଆଜି କ'ଣ ମୋ ପାଇଁ କଫି ମଗାଉଛନ୍ତି । ମନେ ହେଉଛି ଆଜି ମ୍ୟାଡ଼ାମ୍ ଭଲ ମନରେ ଆପଣଙ୍କୁ ଅଫିସ୍‌କୁ ପଠେଇଛନ୍ତି ।

Digitized by srujanika@gmail.com

ସରୋଜ : ନାଇଁରେ ଶଙ୍କର । ସବୁଦିନ ଯାହା, ଆଜି ବି ମ୍ୟାଡାମ୍‌ଙ୍କ ମୁଡ୍ ସେଇଆ । ଏ ପୋଲିସ୍ ଚାକିରି କରି ମୁଁ ମସ୍ତବଡ଼ ଭୁଲ୍ କରିଛି ବୋଲି ଏବେ ପସ୍ତାଉଛି ।

ଶଙ୍କର କ'ଣ କହିଲେ ସାର୍ । ପୋଲିସ୍ ଚାକିରିଟା କ'ଣ ଏତେ ନାକରା । କଥାରେ ଅଛି- ମାଛ ଖାଇବ ଇଲିସି, ଚାକିରି କରିବ ପୋଲିସି ।

ସରୋଜ : ଏସବୁ ଖାଲି କହିବା କଥାରେ ଶଙ୍କର । ଦିନ ନାଇଁ, ରାତି ନାଇଁ ଚୋରଖଣ୍ଟଙ୍କ ପଛରେ ଗୋଡ଼େଇବ । ଭଲମନ୍ଦ ଦିନରେ ନିଜ ପରିବାର ସହିତ ଟିକେ ଖୁସି ମନେଇ ପାରିବନି । ଖାଲି ଡ୍ୟୁଟି ଆଉ ଡ୍ୟୁଟି । ଏମିତି ଡ୍ୟୁଟି କରି କରି ମନଟା ପଥର ପାଲଟିଗଲାଣି । ଆଉ ଘରେ ବସି ଇଲିସି ଖାଇବାର ଭାଗ୍ୟ କାହିଁ ?

ଶଙ୍କର କ'ଣ କହିଲେ, କ'ଣ କହିଲେ ସାର୍ । ଆପଣ ଇଲିସି ମାଛ ଝୋଳ ଏ ଯାଏଁ ଖାଇନାହାନ୍ତି ? ମ୍ୟାଡାମ୍ ତ ବହୁତ ଭଲ ରୋଷେଇ କରନ୍ତି ।

ସରୋଜ : ସେଇ କଥା ତ ! ମୁଁ ତୋତେ କେମିତି ବୁଝେଇବିରେ ଶଙ୍କର । ମୋ କପାଳ ମନ୍ଦ । ନହେଲେ ବାହାଘର ସାତବର୍ଷ ହୋଇଗଲାଣି ଆଉ ଘରେ ଏଡ଼େ ସୁନ୍ଦର ଇଲିସିଟା ଥାଉ ଥାଉ ସେ ଲୁଣିଆ କି ମିଠା, ସୁଆଦିଆ କି ଅସୁଆଦିଆ ଆଜିଯାଏ ଭଲ କରି ମନପୂରେଇ ତା' ସ୍ୱାଦ ଚାଖିବାର ଭାଗ୍ୟ କ'ଣ ଜୁଟିଲାଣି ?

ଶଙ୍କର ସାର୍ । ଆପଣଙ୍କ ଘରେ ସୁନ୍ଦର ଇଲିସିଟା ଅଛି... ମାନେ... (ଟିକେ ଚିନ୍ତା କରି) ଓ... ବୁଝିଗଲି । (ଜିଭ କାମୁଡ଼ି) (ସ୍ୱଗତୋକ୍ତି କରି) ମ୍ୟାଡାମଙ୍କ କଥା କହୁନାହାନ୍ତି ତ । (ସରୋଜଙ୍କୁ) ସାରେ ! ଏମିତି କ'ଣ କହୁଛନ୍ତି ମ । ଆପଣ ପରା ଦି'ଟା ପିଲାର ବାପା । ଆଉ ଇଲିସିଟା ଚାଖି ନାହାନ୍ତି କ'ଣ କହୁଛନ୍ତି ।

ସରୋଜ : ଆରେ ଶଙ୍କର ତୁ କିଛି ବୁଝୁନୁ । ଆରେ ଧୀରେ ଧୀରେ ସୁସ୍ଥେ

Digitized by srujanika@gmail.com

ମଉଜ କରି ଭଲ ଜିନିଷଟା ଖାଇଲେ ତା' ସୁଆଦ ଅଧିକ ବଢ଼ିଯାଏ । ଆଉ ଏଣୁ ଆସିବ ଗେଫାଏ ମାରିବ, ତେଣୁ ଆସିବ ଗେଫାଏ ମାରିବ ଯା'କୁ କ'ଣ ଖାଇବା କୁହାଯାଏ ?

ଶଙ୍କର   ବୁଝିଗଲି ! ବୁଝିଗଲି ସାର୍ ! ଆମ ଘରେ ବି ଏଇ ଅବସ୍ଥା । କହେ ସୁଗ୍ରୀବ ରାମ କ୍ଳେଶ ଭାଷା ବେନି ଜନେ ପଡ଼ିଅଛି ଏକା ଦଶା ।

ସରୋଜ :   ହଉ ସେ ସବୁ ଛାଡ଼ । ଆଜି କାହିଁକି ଫାଙ୍କା ଫାଙ୍କା ଲାଗୁଛି କିରେ । କେହି ପାର୍ଟିଫାର୍ଟିର ତ ଦେଖା ନାହିଁ । ହଉ ତୁ ଗଲୁ କଫି ନେଇ ଆସିବୁ ।

ଶଙ୍କର   ହଉ ଯାଉଛି ସାର୍ । (ଯାଉ ଯାଉ ଦୁଆର ମୁହଁରେ ଅଟକି ଯାଇ) ସାର୍ ! ଆସିଗଲେ ଆସିଗଲେ । ଫୁଲ୍ ବୋବାଲ୍ ପାର୍ଟି ।
(ଏତିକି କହୁ କହୁ ଭିତରକୁ ଧସେଇ ପଶିଛନ୍ତି ସୁଶୀଳା ଦେବୀ ଓ ତାଙ୍କ ଭାଇ ସୁରଥ)

ସୁଶୀଳା   ପୋଲିସ୍‌ବାବୁ ! ପୋଲିସ୍‌ବାବୁ । ମୋ ମାନ ଇଜ୍ଜତ ସବୁ ତଳେ ପଡ଼ିଗଲା । ମୁଁ ବରବାଦ୍ ହୋଇଗଲି । ମୋତେ ରକ୍ଷା କରନ୍ତୁ ।
(ସରୋଜ ପାଦ ତଳେ ହାତଯୋଡ଼ି ବସି ପଡ଼ିଛନ୍ତି)

ସରୋଜ :   ଆରେ ଆରେ ଇଏ କ'ଣ କରୁଛ ? ଆଗେ କୁହ ତୁମ ଇଜ୍ଜତ କିଏ, କେତେବେଳେ ଆଉ କାହିଁକି ଲୁଟିଲା । ସାକ୍ଷୀ କିଏ ଅଛି । ତମ ଘରେ ନା ବାହାରେ । ସବୁ ଖୋଲିକି କୁହ । ଉଠ, ଉଠ ।

ସୁଶୀଳା   ନାଇଁମ ସାର୍ ! ମୋ ଇଜ୍ଜତ କେହି ଲୁଟିନାହାନ୍ତି । ମୋ ଝିଅକୁ ଅଶାନ୍ତିପୁରର ସେ ଟୋକାଟା କୁଆଡ଼େ ନେଇ ପଳେଇଛି ।
(ଏତିକିବେଳେ ଝଡ଼ ବେଗରେ ପ୍ରବେଶ କରିଛନ୍ତି ଶାନ୍ତିଦେବୀ ଓ ତାଙ୍କ ଭାଇ ଶିବ)

ଶାନ୍ତି   (ଦୁଆର ମୁହଁରେ ଠିଆ ହୋଇଥିବା ଶଙ୍କରକୁ ଠେଲ ଦେଇ) ଉଠ ମ ! ଦୁଆରପାଳ ନେଖା ଏମିତି ବାଟ ଜଗିଛ କାହିଁକି ? (ଦଶ

Digitized by srujanika@gmail.com

ଟଙ୍କା ହାତରେ ଗୁଞ୍ଜି ଦେଇ) ନିଅ ତମ ଦକ୍ଷିଣା । ଆମେ ଏବେ ଭିତରକୁ ଚାଲିଲୁ ।

(ଶଙ୍କର ବୋକା ଭଳି ଅନେଇଛି । ଭିତରକୁ ପଶିଯାଇଛନ୍ତି ଶାନ୍ତି ଦେବୀ)

ଶାନ୍ତି (ସୁଶାଳାକୁ ଦେଖି) ଆଲୋ ତୁ ! ମୋ ଆଗରୁ ଆସି ଏଠି ମୋ ନାଁରେ ଚୁଗୁଲି କରିବା ଆରମ୍ଭ କରିଦେଲୁଣି । ନିହାତି ବଦମାସ୍ ମାଇକିନାଟା । ମାଆ ଯେମିତି, ଝିଅ ସେମିତି । ଯାଙ୍କ ବଉଁଶ, ବୁନିଆଦି ଚଉଦ ପୁରୁଷ ନୁଙ୍ଗୁରା । ଇଏ କୋଉଠୁ ଭଲ ହେବେ ।

ସୁଶୀଳା ଆଲୋ କ'ଣ କହିଲୁ, କ'ଣ କହିଲୁ । ଆମେ ନୁଙ୍ଗୁରା । ଆମେ ଖରାପ । ତୋର ଏଡ଼େ ସାହସ ମୋ ଚଉଦପୁରୁଷ ନାଁ ଧରିବୁ । ଆଲୋ ରାୟମହାପାତ୍ରଙ୍କ ନାଁ ପଡ଼ିଲେ ଗର୍ଭିଣୀ ଗାଈ ବି ବାଟ ଛାଡ଼ି ଦେଉଛି । ତୁ ଏମିତି କ'ଣ କି ?

ସୁରଥ ଏ ଶିବ । ତୋ ଭଉଣୀକୁ କହ ଯବାନ୍ ସମ୍ଭାଳି କଥା କହୁ । ନ ହେଲେ...

ଶିବ ଆବେ ଫଟା କଇଁଥ । କାହାକୁ ଏତେ ନାଲି ଦେଖଉଚୁ ମାଁ । ମତେ ? ଶିବକୁ ! ମୁଁ କୋପ କଲେ ତୁ ସମ୍ଭାଳି ପାରିବୁ ତ ?

(ପରସ୍ପର ମାର୍‌ପିଟ୍ ହେବାକୁ ଆଗେଇ ଆସିଛନ୍ତି । ଶଙ୍କର ଓ ସରୋଜ ଉଭୟଙ୍କୁ ଅଲଗା କରିବାକୁ ଚେଷ୍ଟା କରିଛନ୍ତି)

ଶଙ୍କର ଆରେ ଇଏ କ'ଣ ହଉଚି । ଏଇଟା ଥାନା ନା ଭୁତ୍‌ଖାନା ବୋଲି ଭାବିଲ ? ଏଇଟା କାନୁନ୍‌ର ମନ୍ଦିର । ଏଠି ଏସବୁ କଲେ ସିଧା ହାଜତ୍‌ରେ ବସି ଦିନରେ ବି ତାରା ଗଣୁଥିବ ।

ସରୋଜ : ଆପଣମାନେ ଯଦି ଆଉଥରେ ନିୟମ ଉଲଂଘନ କରନ୍ତି, ତେବେ କଥାଟା ଅନ୍ୟ ବାଟରେ ଯିବ । ଶାନ୍ତ ହୋଇ ନିଜ ନିଜର ସମସ୍ୟା କ'ଣ କୁହନ୍ତୁ ।

Digitized by srujanika@gmail.com

ସୁଶୀଳା : ସାର୍ ! ମୁଁ ଯୋଉ ଟୋକା କଥା କହୁ ନ ଥିଲି- ସେ ଟୋକାଟା ଏଇ ଶାନ୍ତି ଦେବୀଙ୍କ ସୁପୁତ୍ର । ସେଇ ଛତରା ଟୋକା ମୋ ଝିଅକୁ ୮ ଦିନ ହେବ କୁଆଡ଼େ ନେଇ ପଳେଇଛି ।

ଶାନ୍ତି ତାହା ମିଛ କଥା ଆଜ୍ଞା । ମୋ ପୁଅ କାହିଁକି ଯା' ଝିଅକୁ ନେଇଯିବ ମ । ବରଂ ଯା ଉଦଣ୍ଡୀ ଝିଅ ମୋ ନିରୀହ ପୁଅଟାକୁ ଶିଖେଇ କୁଆଡ଼େ ନେଇଯାଇଛି । (ଟିକେ କାନ୍ଦି) ସତ କହୁଚି ସାର୍ । ଆଜିକୁ ୮ ଦିନ ହେବ ଆମେ ଘରେ ଚୁଲି ଜଳିନି କି ପେଟକୁ ଦାନା ଯାଇନି । ତା'ବାପା ତ ବିଛଣାଲଗା ହୋଇଗଲେଣି । ସେଇଥିପାଇଁ ମୁଁ ମୋ ଭାଇକୁ ନେଇ ଆପଣଙ୍କ ପାଖକୁ ଆସିଲି । ଯା' ଝିଅକୁ ଧରି ଆଣି ହାଜତରେ ପୁରାନ୍ତୁ ସାର୍ ।

ସୁଶୀଳା ଆଜ୍ଞା ସାର୍! ଆପଣ କ'ଣ ବିଶ୍ୱାସ କରୁଛନ୍ତି ଯେ, ଝିଅପିଲା ହେଇ ପୁଅପିଲାକୁ ନେଇଯିବ ।

ଶାନ୍ତି କାହିଁକି ନ ନେଇଯିବ ? ଆଜିକାଲି ତ ଝିଅମାନେ ସବୁ କଥାରେ ଫାଷ୍ଟେ । ପାଠ ପଢ଼ାରେ, ଚାକିରିରେ, ନାଚ, ଗୀତ, ଅଭିନୟ ଏମିତିକି ପୋଷାକ ପିନ୍ଧାରେ ବି ଫାଷ୍ଟେ । ଆଉ ପୁଅଟାକୁ ଉଡ଼େଇ ନେବା କୋଉ ବଡ଼ କଥାଟା ଯେ... ଏତେ ଛୋପରୀ ହଉଚୁ ।

ଶିବ ସାରେ, ଆଗେ ଆମ କଥାଟା ଲେଖିଲେ ।

ସୁରଥ ନାଇଁ ସାରେ । ଆମେ ଆଗ ଆସିଚୁ, ଏଣୁ ଆଗେ ଆମ କଥା ଲେଖା ହେବ ।

ଶିବ ହଟ୍ ବେ ! ଆମେ ପୁଅବାଲା । ଆମ କଥା ଆଗ ।

ସୁରଥ ଚୁପ୍ ବେ ! ଲେଡ଼ିଜ୍ ଫାଷ୍ଟ !

ଶଙ୍କର ଓହୋ ! ଚୁପ୍ କର । ଚୁପ୍ କର । ସାର୍ ଯାହା ପଚାରିବେ ସେଇଧାରାରେ ଜଣ ଜଣ କରି ଉତ୍ତରଦେବ । ଏଠି ବାହାଘର ସ୍ଥିର ହେଉନି ଯେ, ପୁଅଘର ଆଗ କି ଝିଅଘର ଆଗ ବିଚାର କରାଯିବ ।

Digitized by srujanika@gmail.com

ସରୋଜ : ଆପଣମାନେ ସ୍ଥିର ହୋଇ ବସନ୍ତୁ । ଶଙ୍କର ପ୍ୟାଡ୍‌ଟା ଦେଲୁ । ହଁ ପ୍ରଥମେ ସୁଶୀଳା ଦେବୀ କୁହନ୍ତୁ । ଆପଣଙ୍କ ପୂରା ନାଁ...

ସୁଶୀଳା ଶ୍ରୀମତୀ ସୁଶୀଳା ରାୟମହାପାତ୍ର । ସ୍ୱାମୀ ଶ୍ରୀ ଶଶାଙ୍କ ରାୟମହାପାତ୍ର ।

ସରୋଜ : ଘର ?

ସୁଶୀଳା ସୁଜନପୁର ।

ସରୋଜ : ଝିଅର ନାଁ.....

ସୁଶୀଳା ସୁନୀତା ରାୟମହାପାତ୍ର । ବୟସ ୧୯ ବର୍ଷ । ଅଶାନ୍ତପୁର ପଞ୍ଚାୟତ କଲେଜର ଦ୍ୱିତୀୟ ବର୍ଷ ଛାତ୍ରୀ । ଦେହର ରଙ୍ଗ ଗୋରା ।

ସରୋଜ : କେବେଠାରୁ ଘରୁ ନିଖୋଜ ଅଛି ।

ସୁରଥ ସାର୍ ! ୮ ଦିନ ତଳେ କଲେଜ ଗଲା । ଆଉ ତ ଫେରିନି ।

ସରୋଜ : ଠିକ୍ ଅଛି । ଏଥର ଶାନ୍ତିଦେବୀ କୁହନ୍ତୁ ।

ଶାନ୍ତି ମୋ ନାଁ ଶାନ୍ତିଲତା ରାୟବାହାଦୁର । ସ୍ୱାମୀ—ଶ୍ରୀ ସୁମନ୍ତ ରାୟବାହାଦୁର । ଘର—ଅଶାନ୍ତିପୁର । ପୁଅ ନାଁ—ସୁଶାନ୍ତ ରାୟବାହାଦୁର । ବୟସ—୨୧ ବର୍ଷ । ଅଶାନ୍ତପୁର ପଞ୍ଚାୟତ କଲେଜର ବି.ଏ. ପଢୁଛି ।

ସରୋଜ : ସିଏ କେବେଠାରୁ ନିଖୋଜ ଅଛି ?

ଶିବ ଏଇଟା କ'ଣ କହିବାକୁ ପଡ଼ିବ ଆଜ୍ଞା । ତାଙ୍କ ଝିଅ ଯୋଉଦିନଠାରୁ ନିଖୋଜ ଅଛି ମୋ ଭଣଜା ସେଇଦିନଠାରୁ ନିଖୋଜ ଅଛି ।

ସରୋଜ : ଏଥର ଆପଣମାନେ ଏଥିରେ ଦସ୍ତଖତ କରନ୍ତୁ । ହଁ ପୁଅଝିଅଙ୍କ ଫଟୋ ଯଦି ଅଛି ଦିଅନ୍ତୁ ।

(ଫଟୋ ସରୋଜଙ୍କୁ ଦେଇଛନ୍ତି ଓ ଦସ୍ତଖତ କରିଛନ୍ତି)

ସରୋଜ : ଏଥର ଆପଣମାନେ ନିଜ ନିଜଘରକୁ ଯାଆନ୍ତୁ । ଏଣିକି ଯାହା କରିବା କଥା ଆମେ କରିବୁ । ବାସ୍ ।

Digitized by srujanika@gmail.com

ଶାନ୍ତି ଆଜ୍ଞା ହେଇଟି ପୁଲିସିବାବୁ । ଦୁଇଦିନ ଭିତରେ ଯଦି ଆମ ପୁଅ ଘରକୁ ନ ଫେରେ, ମୁଁ ତା' ଘରେ ନିଆଁ ଲଗେଇଦେବି ।

ସୁଶୀଳା ଶୁଣୁଛ ଶୁଣୁଛ ପୁଲିସିବାବୁ । ଆଲୋ ହେ, ତୁ'ଟା ଏଡ଼େ କାତୁଆ । ମୋତେ କ'ଣ ନିଆଁ ଲଗେଇ ଆସେନା । ଆଲୋ ମୁଁ ଯଦି ତୁମ ବଉଁଶକୁ ଲଙ୍ଗଳା କରେଇ, ହାତରେ ହାତକଡ଼ା ପକେଇ ଦାଣ୍ଡରେ ଚଲେଇ ଚଲେଇ ଥାନାରେ ଭର୍ତ୍ତି ନ କରିଛି, ତା'ହେଲେ ମୋ ନାଁ ସୁଶୀଳା ରାୟମହାପାତ୍ର ନୁହଁ ।

ଶାନ୍ତି (ଦର୍ଶକଙ୍କୁ) ଆରେ ହେ... ଦେଖମ ଯା'ର ବହପକୁ । ମୋ ଗାଈ ଭଳି ଶାନ୍ତ ସୁଧାର ପୁଅଟାକୁ ଯା' ଘୋଡ଼ୀ ଉଦ୍ଦଣ୍ଡୀ ଝିଅଟା ଫସେଇ କୁଆଡ଼େ ଗାଏବ କରିଦେଇଛି ଯେ ପତ୍ତା ମିଳୁନି । ଆଉ ଇଯେ କହୁଛି କ'ଣ ହାଜତରେ ଭର୍ତ୍ତି କରିବ, ହଉ ହେଲା । (ସୁଶୀଳାକୁ) ଏଇ ଦେଖ୍ ଲୋ ସତୀ ସାବିତ୍ରୀ ମାଆ, ଏହି କାନିରେ ଗଣ୍ଠି ପଡ଼ିଲା । କିଏ କାହାକୁ ହାଜତରେ ଭର୍ତ୍ତି କରିବ ଦେଖିବା ।

(ପରସ୍ପର ମଧ୍ୟରେ କଳି, ଝଗଡ଼ା, ଠେଲାପେଲା ଆରମ୍ଭ କରିଦେଲେ ।

ସରୋଜ : ଆରେ ଚୁପ୍ । କହିଲି ପରା ଚୁପ୍ । ଶଙ୍କର, ଖୁବ୍ ଶୀଘ୍ର ଏମାନଙ୍କୁ ବାହାରକୁ ନେଇଯା । ପୋଲିସ୍ ସାମ୍ନାରେ ପୁଣି ମାଡ଼ପିଟ୍ ।

ଶଙ୍କର (ଶାନ୍ତି ଓ ଶିବଙ୍କୁ ଗୋଟାଏ ପଟକୁ ଟାଣି ନେଇଛି) କାହିଁକି ଏମିତି ପାଟି କରୁଛ କହିଲ । ଏଫ୍.ଆଇ.ଆର୍. ତ ଦେଲ । ଏଥର ଘରକୁ ଯାଆ । ପୁଅଝିଅ ମିଳିଲେ ଆମେ ଖବର ଦେବୁ । ବୁଝିଲ ତ ।

ଶାନ୍ତି (ହଠାତ୍ ଶଙ୍କରଙ୍କ ହାତ ଧରି ପକେଇ) ତମେ ଆଜିଠାରୁ ମୋର ଧରମ ବାପ ହେଲ । (୫୦୦ ଟଙ୍କା ହାତରେ ଗୁଞ୍ଜି ଦେଇ) ଏଣିକି ନାତିର ଭାଗ୍ୟ ଆଉ ଝିଅର ମାନଇଜ୍ଜତ ତମ ହାତରେ ବାପା । ତମ ଛଡ଼ା ମୋର ଆଉ କେହି ନାହିଁ ।

Digitized by srujanika@gmail.com

ଶଙ୍କର : ଆରେ ଇଏ କ'ଣ କରୁଚ, ଲାଞ୍ଚ ଦଉଚ...

ଶିବ ନାଇଁମ ବାପା । ଏଇଟା ଆପଣଙ୍କର ଚା' ପାଣି ଖର୍ଚ୍ଚ । ବାପାଙ୍କୁ କ'ଣ ପୁଅ ଝିଅ ଲାଞ୍ଚ ଦିଅନ୍ତି । ଆପଣ ତ ପୁଣି ଗାଡ଼ିରେ ତେଲ, ପୋଡ଼ି, ଖରାତରାରେ ବୁଲି ଖୋଜାଖୋଜି କରିବେ... ।

ଶାନ୍ତି ହେଇଟି ବାପା ! ମୁଁ ବାପଛେଉଣ୍ଡ ଥିଲି, ଆଜିଠୁ ଆଉ ନୁହେଁ । (କାନରେ) ଯେମିତି ହଉ ମାଆଝିଅଙ୍କୁ ହାଜତରେ ଗୋଟାଏ ରାତି ଠୁଙ୍କିଦେବ । ଆରେ ଶିବ- କାଲି ବାପାଙ୍କ ଘରେ ଆଣି ଅରୁଆଚାଉଳ, ପରିବା ଆଉ ଘିଅ ଦେଇଯିବୁ । (ଶଙ୍କରଙ୍କୁ ଆଉଁସି) ମୋ ବାପା ଦିନରାତି ଖଟି ଖଟି କଳାକାଠ ପଡ଼ିଗଲେଣି ।

ଶଙ୍କର (ବଦଳି ଯାଇଛି) ହଉ ମାଆ ! ତୁ ବେଫିକର ରହ । ମୁଁ କନେଷ୍ଟବଲ ଶଙ୍କର ଦାସ । ମୋ ଝିଅର ଇଜ୍ଜତ ମୋର ଇଜ୍ଜତ । ମୁଁ ମୋଟେ ଛାଡ଼ିବିନି ।

ଶିବ ମୋ ବାପାଲୋ ! (ଶଙ୍କରଙ୍କ ପାଦ ତଳେ ମୁଣ୍ଡ ଲଗାଇଛି)

(ଏମାନଙ୍କ ହାବଭାବ ଲକ୍ଷ୍ୟ କରି ସୁଶୀଳା ସରୋଜଙ୍କୁ କହିଛି)

ସୁଶୀଳା ହେଇଟି ସାର୍ (ସରୋଜଙ୍କ ହାତରେ ପାନ ଖଣ୍ଡେ ଦେଇ) ଆପଣ ଆଜିଠାରୁ ମୋର ଧରମ ଭାଇ ହେଲେ । ଏଣିକି ଭଉଣୀର ଇଜ୍ଜତ୍ ଆପଣଙ୍କ ହାତରେ । (ସୁରଥଙ୍କୁ ଠାରିଛନ୍ତି)

ସୁରଥ (ଟଙ୍କା ନେଇ ସରୋଜଙ୍କୁ ପଛ ପଟେ ହାତରେ ଗୁଞ୍ଜି ଦେଇଛି) ଭାଇ, ଆମକୁ ରକ୍ଷାକର ଭାଇ । ତା' ପୁଅକୁ ଏମିତି ପାନେ ଦେବ ଯେ, ଯେମିତି ପୁଅ ଆଉ କୃଷ୍ଣ ସାଜିବାକୁ ମନ କରିବନି ।

ସୁଶୀଳା ହଁ ଭାଇ, ମୁଁ ଭାଉଜଙ୍କ ପାଇଁ ବାସୁମତୀ ଅରୁଆ ବସ୍ତାଏ, ନଡ଼ିଆ ବସ୍ତାଏ, କାଠିଆ କଦଳୀ କାନ୍ଦିଏ ପଠେଇଦେବି । ଭାଇ ମ ! ଆମର ଦି'ଦିଟା ଜର୍ସି ଗାଇ କ୍ଷୀର ଦଉଛନ୍ତି । ଏଣିକି ତେଲି ସୁରଥ ଘରେ ଆଣି କ୍ଷୀର ଦେଇଯିବ ।

Digitized by srujanika@gmail.com

ସରୋଜ : ଏଗୁଡ଼ା କିନ୍ତୁ ଭଲ କଥା ନୁହେଁ । ଭଉଣୀ ହେଇ ଭାଇକି ଦେବ । ମତେ ଜମା ଭଲ ଲାଗୁନି... ।

ସୁଶୀଳା ଭାଇ ! ତମେ ପରା ଭଉଣୀର ମାନ ଇଜ୍ଜତ ରକ୍ଷା କରିବ । ତା' ତୁଳନାରେ ଏସବୁ କିଛି ନୁହଁ । ଏସବୁ ଭଉଣୀର ଭାଇ ପ୍ରତି ସ୍ନେହ । (ଶଙ୍କର ଏ ସବୁ ଲକ୍ଷ୍ୟ କରୁଥାଏ । ସୁଶୀଳା ତା'କାନରେ ଫୁସ୍ ଫୁସ୍ କରି କ'ଣ କହିଛି)

ଶଙ୍କର (ସରୋଜଙ୍କ ନିକଟକୁ ଆସି) ଏସବୁ କ'ଣ ଚାଲିଛି ସାର୍ । ନ୍ୟାୟ, ନ୍ୟାୟ । ନୀତିନିୟମ ସମସ୍ତଙ୍କ ପାଇଁ ସମାନ । ଆପଣା, ଆଗ ମୋ ଝିଅ କଥା ବୁଝନ୍ତୁ । ନ ହେଲେ କଥାଟା ଭଲ ହେବନି ।

ସରୋଜ : କ'ଣ ହେଲା ? ସିଏ ତୁମ ଝିଅ !

ଶଙ୍କର ଇୟେ ଯେମିତି ତମ ଭଉଣୀ, ସିଏ ସେମିତି ମୋ ଝିଅ- ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ସରୋଜ : ଆରେ ବାଃ; କିନ୍ତୁ ଶଙ୍କର, ମୋ ଭଉଣୀର ଝିଅ ହଜିଛି । ଲେଡ଼ିଜ୍ ଫାଷ୍ଟ । ଏଣୁ ମୁଁ ପ୍ରଥମେ ମୋ ଭାଣିଜୀର ଇଜ୍ଜତ ବଞ୍ଚେଇବି । ୩୫୪, ୪୦୧, ୬୦୭ ଦଫାରେ ସେ ବଜାରୀ ଟୋକାକୁ ଲକ୍ ଅପ୍‌ରେ ମାସେ ରହିବାକୁ ପଡ଼ିବ । ଆଉ ୧୦,୦୦୦ ଟଙ୍କା ଜୋରିମାନା ଦେବାକୁ ପଡ଼ିବ । ବୁଝିଲ ?

ଶଙ୍କର କ'ଣ ହେଲା, କ'ଣ ହେଲା ସାର୍ । ତମକୁ ଏକା ଦଫା, ଆଇନ୍ କାନୁନ୍ ଜଣା । ଆଉ ମୁଁ କ'ଣ ଭକୁଆ । ମୁଁ କ'ଣ ପୋଲିସ୍ ଟ୍ରେନିଂ ନେଇନି ନା ଦଫା ବିଷୟରେ ପଢ଼ିନି । ହେଇ ଦେଖମ... ମତେ ପୁଣି ଦଫା ଦେଖଉଛନ୍ତି ।

ସରୋଜ : (ରାଗରେ) ଶଙ୍କର ! କାହାକୁ କ'ଣ କହୁଛ ବୁଝିସୁଝି କହୁଛ ତ ? ମୁଁ ହେଲି ଇନିସ୍‌ପେକ୍ଟର । ତମେ ସାମାନ୍ୟ କନେଷ୍ଟବଳ ।

Digitized by srujanika@gmail.com

ଶଙ୍କର : ହଁ ହୋ! ମୁଁ ଜାଣିଛି ତମେ ଇନିସ୍‌ପେକ୍ଟର କ'ଣ ହେଇଗଲା ସେଇଠୁ ? (ମୁଣ୍ଡକୁ ଦେଖେଇ) ଏ ମୁଣ୍ଡ ବାଳଗୁଡ଼ା ଖାଲିରେ ଧଳା ହେଇନି ମ। ଆପଣଙ୍କ ଚାକିରି ଯେତେଦିନ ନୁହେଁ, ପୋଲିସ୍ ବିଭାଗରେ ମୋର ଅଭିଜ୍ଞତା ତା'ଠାରୁ ଢେର୍ ବେଶୀ। ମତେ ଏ ନାଲି ଆଖି ଦେଖେଇବେନି। ବୁଝିଲେ ତ।

ସରୋଜ : ମୁଁ ଦେଖୁଛି ଏଇ କିଛି ସମୟ ଭିତରେ ତୁମ କଥା କହିବା ଷ୍ଟାଇଲ୍ ବହୁତ ବଦଳି ଗଲାଣି। ସିନିୟର୍ ଅଫିସର୍ ସହିତ ବାଜେ ଯୁକ୍ତି କଲେ କ'ଣ ହେବ ଜାଣିଛ ? ଗୋଟାଏ ଫୋନ୍ କଲ୍ କରିବି, ଘଣ୍ଟାଏ ଭିତରେ ତୁମେ ଯାଇ କେବିକେ ଜିଲ୍ଲାରେ ପାହାଡ଼ ଗଣୁଥିବ। ଆରେ... ବାଘକୁ ଛେଳି ମନେକରିଛ ନା କ'ଣ ?

ଶଙ୍କର ରଖ ହୋ ତୁମ ଫୁଟାଣି। ଲାଞ୍ଚ ଖାଇ ଖାଇ ତ କେବିକେରେ ୧୦ ବର୍ଷ ରହି ଏବେ କଟକ ବଦଳି ହେଇ ଆସିଛ, ସିଏ ପୁଣି ଲାଞ୍ଚ ଦେଇ। ମୁଁ ଗୋଟାଏ ଫୁଟ୍‌କି ମାରିବି ଯେ, ପୁଣି ଯାଇ କେବିକେରେ ଆଦିବାସୀଙ୍କ ସହିତ ଧାଙ୍ଗଡ଼ା ନାଚୁଥିବେ।

ସରୋଜ : (ରାଗରେ ମାରିବାକୁ ଉଦ୍ୟତ ହୋଇ ଚିତ୍କାର କରିଛନ୍ତି) ଶଙ୍କର !

ଶଙ୍କର (ଦମ୍ଭ ଗଳାରେ) କ'ଣ ସାରେ ? ପ୍ରଥମେ ହାତ ତଳକୁ କରନ୍ତୁ।

ସରୋଜ : ଶଙ୍କର...

(ଦୁଇଜଣଙ୍କ ଯୁକ୍ତିତର୍କ ଦେଖି ସୁଶୀଳା, ସୁରଥ, ଶିବ ଓ ଶାନ୍ତି ବାହାରକୁ ଚାଲିଯାଇଛନ୍ତି)

(ସରୋଜ ଓ ଶଙ୍କରଙ୍କ ପାଟିତୁଣ୍ଡ ଭିତରେ ପୁଅଝିଅ ଦୁଇଜଣ ହାତରେ ଫୁଲମାଳ ଧରି ପଶି ଆସିଛନ୍ତି ଭିତରକୁ)

ପୁଅ ସାର୍ ! ସାର୍ ! ଆମକଥା ଶୁଣନ୍ତୁ ସାର୍।

ଝିଅ (ଶଙ୍କରଙ୍କ ହାତଧରି ପକେଇ) ଆମ କଥା ଟିକେ ଶୁଣନ୍ତୁ ସାର।

(ଦୁହେଁ ପ୍ରକୃତିସ୍ଥ ହୋଇଛନ୍ତି)

Digitized by srujanika@gmail.com

ସରୋଜ : (ଚେୟାର୍‌ରେ ବସିପଡ଼ି) କ'ଣ ହେଇଛି କୁହ । ମୁଡ୍‌ଟା ଠିକ୍ ନାହିଁ । ଯାହା କହିବା କଥା ଜଲ୍‌ଦି କୁହ ।

ପୁଅ ଆଜ୍ଞା ଦେଖନ୍ତୁ । ଆମେ ପରସ୍ପରକୁ ଭଲ ପାଉ । ହେଲେ ଆମ ଘର ଲୋକେ ଆମ ପ୍ରେମ ପଥରେ ପ୍ରତିବନ୍ଧକ ସାଜିଛନ୍ତି । ଏଣୁ ଆମେ ଚାହୁଁଛୁ, ଏଇଠି ଆପଣଙ୍କ ସାମ୍ନାରେ ଆମ ବାହାଘରଟା ହେଇଯାଉ ।

ଶଙ୍କର ହଇହୋ ! ଲୈଲା-ମଜନୁ । ତୁମେ ଦୁହେଁ ସାବାଳକ କି ନୁହେଁ, ନାଆଁ କ'ଣ, ଘର କେଉଁଠି କିଛି ନ ଜାଣି...

ଝିଅ ସାର୍ ! ଆଗେ ବାହାଘରଟା ସରିଯାଉ । ତା'ପରେ ସବୁ କହିବି । ଆମ ଘର ଲୋକେ ଯେକୌଣସି ମୁହୂର୍ତ୍ତରେ ଏଠାକୁ ଆସିପାରନ୍ତି ।

ପୁଅ ହେଇ ଦେଖନ୍ତୁ ସାର୍ । ମୁଁ ଫୁଲମାଳ ନେଇଆସିଛି । (ଝିଅ ଗଳାରେ ଫୁଲମାଳ ପିନ୍ଧାଇଛି । ଝିଅ ପୁଅ ଗଳାରେ ଫୁଲମାଳ ପିନ୍ଧେଇ ଦେଇଛି) ଏଥର କାମ ଶେଷ । ଏଥର ଯାହା ପଚାରିବା କଥା ପଚାରନ୍ତୁ ।

ସରୋଜ : ତମ ନାଁ, ବୟସ, ଠିକଣା କୁହ ।

ପୁଅ ମୋ ନାଁ ସୁଶାନ୍ତ ରାୟବାହାଦୁର ମୋର ବୟସ ୨୧ ବର୍ଷ । ମୋ ବାପାଙ୍କ ନାଁ...

ଶଙ୍କର (କଥା ଛଡ଼େଇ) ସୁମନ୍ତ ରାୟବାହାଦୁର, ଘର- ଅଶାନ୍ତିପୁର, ମାଆ- ଶାନ୍ତିଲତା ରାୟବାହାଦୁର...

ସରୋଜ : ଆଉ ଇୟେ ସୁନୀତା ରାୟ ମହାପାତ୍ର, ପିତା- ଶଶାଙ୍କ ରାୟମହାପାତ୍ର, ଘର- ସୁଜନପୁର, ଆଉ ଯା'ଙ୍କ ବୟସ ୧୯ ବର୍ଷ ।

ପୁଅ (ହସି) ସାର୍ ଆପଣ ତ ସବୁ ଜାଣିଛନ୍ତି ।

Digitized by srujanika@gmail.com

ଶଙ୍କର : ହେ ଭଗବାନ୍! ଯାହା ପାଇଁ ଏତେ ନାଟ, ତା'ର ପୁଣି ଏମିତି ଭେଟ... ।

(ଏତିକିବେଳେ ଭିତରକୁ ପଶି ଆସିଛନ୍ତି ଶାନ୍ତି, ସୁଶୀଳା, ଶିବ ଓ ସୁରଥ)

ଶାନ୍ତି ବାପା ! ବାପା ମ ! ସେ ଟୋକୀଟା ଇଆଡ଼କୁ ଆସିବାର ଦେଖିଲି...

ସୁଶୀଳା ଭାଇ... ସେ ଟୋକାଟା ଦଉଡ଼ି ଅଫିସ୍ ଭିତରକୁ ପଶିଆସିଲା ନା କ'ଣ ?

(ସରୋଜ ଓ ଶଙ୍କର ଦୁଇଜଣଙ୍କ ଆଡ଼କୁ ଠାରି ଦେଇଛନ୍ତି)

ସୁଶୀଳା ଆଲୋ ! ସୁନୀ ତୁ !

ଶାନ୍ତି ଆରେ ସୁଶା ତୁ ! ଏଇଠି ! ଆରେ ଇୟେ କ'ଣ... ତମ ଦିହିଁଙ୍କ ବେକରେ ଫୁଲମାଳ ? (ଶଙ୍କରକୁ) ବାପା ! ଇୟେ ମୁଁ କ'ଣ ଦେଖୁଛି ? (ମୁଣ୍ଡରେ ହାତ ଦେଇ ବସିପଡ଼ିଛି)

ସୁଶୀଳା (ସରୋଜକୁ) ଭାଇ ! ଇୟେ କ'ଣ ହେଲା ଭାଇ ! (କାନିରେ ମୁହଁ ଲୁଚେଇ ଦେଇଛି)



Digitized by srujanika@gmail.com



# ସ୍ୱାମୀଚୋରି

Digitized by srujanika@gmail.com




| | |
|---|---|
| ଚଇତା | ଗାଉଁଲି ଲୋକ (ବୟସ ୩୮-୪୦) |
| ବେଙ୍ଗୁଲୀ | ଚଇତାର ସ୍ତ୍ରୀ, ମଫସଲି (ବୟସ - ୩୦-୩୨) |
| ବିଦ୍ୟାଧର | ପୋଲିସ୍ କନେଷ୍ଟବଳ (ବୟସ-୪୫) |
| ରଙ୍ଗନାଥ | S.P - (ବୟସ ୪୫/୪୬) |
| ଭଦ୍ରଲୋକ | (୪୦-୪୨) |

Digitized by srujanika@gmail.com

## ॥ ପ୍ରଥମ ଦୃଶ୍ୟ ॥

[କଟକର ବାଲିଯାତ୍ରା ପଡ଼ିଆ । ଲୋକଙ୍କର ପାଟିତୁଣ୍ଡ, ଗୀତର ସ୍ୱର ଆଦି ଶୁଭୁଛି । ଚଇତା ବେଙ୍ଗୁଲୀକୁ ସାଥିରେ ନେଇ ବାଲିଯାତ୍ରା ଦେଖିବାକୁ ଆସିଛି । ବେଙ୍ଗୁଲୀ ମୁଣ୍ଡରେ ହାତେ ଲମ୍ବର ଓଢ଼ଣା । ବେଙ୍ଗୁଲୀ ରେଖା ହାତକୁ ଜାବୁଡ଼ି ଧରିଥାଏ]

ବେଙ୍ଗୁଲୀ : (ଅଳ୍ପ ଓଢ଼ଣା ଟେକି) ଆଲୋ, ଆଲୋ! ଇଏ କ'ଣ ବା, ଏ ଲୋକଗୁଡ଼ାଙ୍କୁ କ'ଣ ଦୁଶୁନିକି ! ଆହା-ହା... । ମୋ ଗୋଡ଼ଟାକୁ ଚକଟି ଦେଇ ଚାଲିଗଲା ।

ଚଇତା (ବେଙ୍ଗୁଲୀର ହାତକୁ ଦୃଢ଼ଭାବରେ ଧରି) ଆଲୋ ବେଙ୍ଗୁଲୀ ! ଇଏ ପରା ବାଲିଯାତ୍ରା । କଟକର ସବୁଠାରୁ ବଡ଼ ଯାତରା । ଦେଖୁନୁ, କେତେ ଭିଡ଼ । ହଁ ଶୁଣୁ! ତୁ ମୋ ହାତକୁ ଜବର କରି ଧରିଥା' । ନ ହେଲେ ହଜିଯିବୁଟି ! ଏ ବେଙ୍ଗୁଲୀ ତୁ ଟିକେ ଦେଖି ଚାହିଁ ଚାଲୁନୁ ।

ବେଙ୍ଗୁଲୀ : ଛିଃ ଛିଃ । କେଡ଼େ ବେହିଆ ମିଣିପେଗୁଡ଼ାମ ।

ଚଇତା ଆଲୋ କ'ଣ ହେଲା ବା ।

ବେଙ୍ଗୁଲୀ : କ'ଣ ଆଉ ନ ହେଲା କହ । ଦେଖୁନା ସେ ମିଣିପେଟାକୁ, କେମିତି ଧିଅରେ ଘଷି ହେଇ ଚାଲିଗଲା ।

ଚଇତା ଆଲୋ, ଯାତରା ଗହଳିରେ ଏମିତି ହୁଏ ବା ।

ବେଙ୍ଗୁଲୀ : (ଗୋଟିଏ ଆଡ଼କୁ ନିର୍ଦ୍ଦେଶ କରି) ମଲା, ମଲା, ଇଆଡ଼େ ଦେଖମ !

ଚଇତା ଆଲୋ କ'ଣ ଦେଖିବି ? ଓହୋ; ମୋ ହାତଟାକୁ ଏଡ଼େ ଜୋର୍‌ରେ ଚିମୁଟିଦେଲୁ କ'ଣ ମ ?

Digitized by srujanika@gmail.com

ବେଙ୍ଗୁଲୀ : ଆରେ ଦେଖମ !

ଚଇତା ଆଲୋ, କ'ଣ ଦେଖଉନୁ ।

ବେଙ୍ଗୁଲି : ଏ ମାଇପିଗୁଡ଼ାଙ୍କୁ ଦେଖୁଛ । କି ଢଙ୍ଗରେ କୁରୁତା ପିନ୍ଧି ମିଣିପଙ୍କ ହାତରେ ହାତ ଛନ୍ଦି ଅଣ୍ଟା ହଲେଇ ଚାଲିଛନ୍ତି । କି ଅଲାଜୁକ ଲୋ ମାଆ ।

ଚଇତା (ହସି) ଥରେ ପରା କହିଲି, ଇଏ ସହର । ଇଏ କ'ଣ ଆମ ଗାଆଁ ହୋଇଛି । ଏଠି ପରା ସମସ୍ତେ ପାଠୁଆ ।

ବେଙ୍ଗୁଲୀ : (ମୁହଁ ମୋଡ଼ି) ଉଁ... । ମଲା ମୋର ପାଠୁଆ ହେଲେ ବୋଲି କ'ଣ ନାଜସରମ ପୋଡ଼ି ଖାଇଛନ୍ତି ।

ଚଇତା ଆଲୋ, ଏଥିରେ ଲାଜସରମ କ'ଣ ରହିଲା କହିଲୁ ? ଯାହାକୁ ଯିମିତି ସୁନ୍ଦର ଦିଶିଲା, ସିଏ ସିମିତି କଲା ।

ବେଙ୍ଗୁଲୀ : ପୋଡ଼ି ଯାଉଲୋ ସୁନ୍ଦରପଣ । ମାଇପିଜାତି ହେଇ ଏଡ଼େ ବେସରମ । ମୁଣ୍ଡରେ ନୁଗା ନାହିଁ କି ହାତରେ ଚୁଡ଼ି ନାହିଁ । ଏଇ ଲାଗି ପରା ସଂସାରରୁ ଧରମ ଛାଡ଼ିଲାଣି ।

ଚଇତା (ହସି) ବେଙ୍ଗୁଲୀ ! ତୁ ଆଉ ହବୁନି । ତତେ ସେଥିରୁ କ'ଣ ମିଳିବ ? ତୁ ଯାତରା ଦେଖିବାକୁ ଆଇଛୁ, ଭଲ କରି ଦେଖେ । ଆଉ ଥରେ ଦେଖିବାକୁ ମିଳିବକି ନାହିଁ ସେ କଥା ମା ମଙ୍ଗଳାଙ୍କୁ ଜଣା ।

ବେଙ୍ଗୁଲୀ : (ଲାଜେଇଯାଇ) ମତେ ଭାରି ସରମ ମାଡୁଛି । ଏ ମାଇପେଗୁଡ଼ା ଛିଃ ଛିଃ । ମିଣିପଙ୍କ ସାଙ୍ଗରେ ହେଁ ହେଁ, ଫେଁ ଫେଁ ।

ଚଇତା ଆଲୋ ସବୁକଥା କ'ଣ ସବୁଠେଇଁ ଚଳେ । ଆମ ଆଗକୁ ଚଳଣି ଅଲଗା । ସହର ଚଳଣି ଅଲଗା । ହଉ ତୁ ଆଗକୁ ଆଗକୁ ମାଡ଼ିଚାଲିଲୁ । ଆଲୋ ଓଢ଼ଣାଟା ଖସେଇ ଦଉନୁ । ମୁହଁଟାକୁ ଏମିତି ଘୋଡ଼େଇ ରଖି କ'ଣ ଦେଖିବୁ କହିଲୁ ?

ବେଙ୍ଗୁଲୀ : ଏଁ, କ'ଣ କହିଲ ? ମୁଣ୍ଡରୁ ନୁଗା ବାଡ଼ିଦେବି ! ନାଇଁ ନାଇଁ ମତେ ସେ ଅଲକ୍ଷଣା କଥାଗୁଡ଼ା କୁହନା ।

Digitized by srujanika@gmail.com

ଚଇତା : (ହସି) ଆଲୋ, ଏଠି କ'ଣ ଆମ ଗାଁ' ନୋକ କିଏ ଅଛି ଯେ, ଏତେ ଲାଜ କରୁଛୁ ?

ବେଙ୍ଗୁଲୀ : ଆମ ଗାଁ ନ ହେଲେ କ'ଣ ହେଲା ବା ! ଏ ମିଣିପିଗୁଡ଼ା ଯିମିତି ଅନଉଛନ୍ତି, ସତେ କି ଗିଳି ପକେଇବେ । ତମେ ପରା କହୁଥିଲ ସହରରେ ପୁଣି ବାଲିଯାତରାରେ ଭାରି ଚୋରି ହୁଏ । ଭିଡ଼ ଭିତରେ ହାର, କାନଫୁଲ ଛିଣ୍ଡେଇ ନିଅନ୍ତି । କେମିତି ମୁଣ୍ଡରୁ ନୁଗା କାଢ଼ି ଫୁଙ୍ଗୁଳା ହେବି କହିଲ ?

ଚଇତା ହଉ ହେଲା, ତୁ ଜବର କରି ମୋ ହାତ ଧରିଥା । ଓଢ଼ଣା ଅଛ ଟିକେ ଟେକି ଦେଇକି ଦେଖ । (ଖୁସିରେ) ହେଇ ହେଇ ଦେଖମ କେମିତି ଚର୍କି ଦୋଳି ଆକାଶକୁ ଉଠିଯାଉଛି । ଏ ଆଡୁକୁ ଅନାବା । କେମିତି ନାଲି, ନେଳି ଆଲୁଅ ଜଳୁଚି, ନିଭୁଚି, ଜଳୁଚି, ନିଭୁଚି ।

ବେଙ୍ଗୁଲୀ : (ଖୁସି ହେଉ) ସତେ ମ ! ଇନ୍ଦ୍ରଭୁବନ ଭଳି ଦୁଉଚିତ ।

ଚଇତା ଦେଖୁଚୁ, ଦେଖୁଚୁନା ବେଙ୍ଗୁଲି । କେତେ ଭଳିକି ଭଳି ଦୋକାନ । ଆ– ଏ ଆଡ଼କୁ ଆ । କଟକର ଠୁଙ୍କାପୁରୀ ତତେ ଖୋଇବି ।

ବେଙ୍ଗୁଲି : ଏଁ, ଠୁଙ୍କାପୁରୀ, ସେଟା ପୁଣି କି ଦରବବା । ତମେ ପରା ମତେ ଦହିବରା, ଆଲୁଦମ୍, ଗୁପଚୁପ୍ ଖୋଇବ ବୋଲି କହୁଥିଲ ।

ଚଇତା ଆଲୋ ରହଲୋ ! ତତେ ଭଳିକି ଭଳି ଜିନିଷ ଦେଖେଇବି ଆଉ ଖୋଇବି ଯେ, ତୋ ସାତଜନମ ଯାଏ ମନେ ରହିଥିବ ।

ବେଙ୍ଗୁଲୀ : ମଲା, ମଲା, ଏଡ଼େ ଗହଳି ଭିତରକୁ କୁଆଡ଼େ ଠେଲି ହେଇ ଯାଉଚ ବା,

ଚଇତା ଆଲୋ, ଏ ଗହଳି ଠେଲି ଆଗକୁ ନ ଗଲେ ଏଇଠି ଇମିତି ଠିଆହେଇ ରହିଥିବୁ । ହଁ, ମୋ ହାତ ଜୋର୍ କରି ଧରିଥା । ଜମା ଛାଡ଼ିବୁନି । ମୁଁ ତୋତେ ବାଟ କଢ଼େଇ ନେଇଯିବି । ଆ... । (ହାତଧରି ଚାହିଁଛନ୍ତି) ।

Digitized by srujanika@gmail.com

[କିଛି ବାଟ ଗଲାପରେ ଭିଡ଼ ଭିତରେ ବେଙ୍ଗୁଲି ଚଇତାର ହାତ ଛାଡ଼ି ଅନ୍ୟ ଜଣକର ହାତ ଧରିପକେଇଛି । ହଠାତ୍ ସେ ଲୋକ ହାତରେ ବାନ୍ଧିଥିବା ଘଣ୍ଟାରେ ବେଙ୍ଗୁଲିର ହାତ ପଡ଼ିଯିବାରୁ ସେ ଚମକି ଉଠିଛି ।]

ବେଙ୍ଗୁଲୀ : (ଓଢ଼ଣା ତଳୁ) ଏଁ, ତମ ହାତରେ ଏଇଟା କ'ଣ ବା ?

ଭଦ୍ରଲୋକ: (ହାତ ଛଡ଼େଇ) Excuse me Mam !

ବେଙ୍ଗୁଲୀ : (ଆଶ୍ଚର୍ଯ୍ୟରେ) ଏଁ ଇସିକୁଜି ? ଆଗୋ, କ'ଣ ଗୁଡ଼ା ଇଆଡୁ ସିଆଡୁ ଗପୁଛବା । ମୋ ହାତଟାକୁ କାହିଁକି ଛଡ଼େଇ ଦଉଛ ? (ଭଦ୍ରଲୋକଙ୍କ ହାତ ଭିଡ଼ି ଧରିଛି)

ଭଦ୍ରଲୋକ: (ପୁଣିଥରେ ବେଙ୍ଗୁଲୀର ହାତ ଛଡ଼େଇ) Please ଭିଡ଼ ଭିତରେ ମୁଁ ବି ଭୁଲ୍‌ରେ ମୋ ସ୍ତ୍ରୀଙ୍କ ହାତଟା ଛାଡ଼ିଦେଇ ଆପଣଙ୍କ ହାତଟା ଧରିନେଇଛି । I am really very sorry mam.

ବେଙ୍ଗୁଲୀ : (ଓଢ଼ଣା ଖସେଇ ଭଦ୍ରଲୋକଙ୍କୁ ଦେଖିଛି । ତା'ପରେ ବାହୁନିବା ଆରମ୍ଭ କରିଛି) ଏଁ, ଆଲୋ ତମେ କୁଆଡ଼େ ଗଲ ? ମୁଁ ନିଆଁନାଗୀ କା' ହାତ ଧରି ତମ ହାତ ଛାଡ଼ି ଦେଲିଲୋ । ତମେ କୁଆଡ଼େ ଗଲ ବା । ମୁଁ ତମକୁ କୋଉଠି ଖୋଜିବି ମୋ ସରଗଚାନ୍ଦ ।

[ତା' କାନ୍ଦ ଶୁଣି ଲୋକ ଜମା ହୋଇଛନ୍ତି । "କ'ଣ ହେଲା, କ'ଣ ହେଲା" ବୋଲି ପାଟି କରୁଛନ୍ତି ।]

ବେଙ୍ଗୁଲୀ : (ବାହୁନି ବାହୁନି) ମୁଁ କି ବୁଦ୍ଧି କରିବ ଲୋ, ମୋ ମାଆ ମାଉସୀମାନେ । ଏଁ ପୋଡ଼ିଯାଇ ମୋର ଯାତରା ଦେଖାଲୋ ମୋ ମୋ ବାପା, ମଉସାମାନେ । ମତେ ଏଠି ଛାଡ଼ି କୁଆଡ଼େ ଗଲ ହୋ ମୋ ରଙ୍କୁଣୀନିଧି । କିଏ ମୋ ପାଖୁ ତମକୁ ଛଡ଼େଇନେଲା ହେ ମୋ ଜୀବଧନ ।

Digitized by srujanika@gmail.com

ଭଦ୍ରଲୋକ: କ'ଣ ହେଇଛି ମାଆ ?

ବେଙ୍ଗୁଲୀ : (କାନ୍ଦି କାନ୍ଦି) କିଏ ତ ଚୋରି କରି ନେଇଗଲା । ମୁଁ କୋଉଠୁ ପାଇବି ?

ଭଦ୍ରଲୋକ: କ'ଣ ତମର ଚୋରି ହେଇଛି ?

ବେଙ୍ଗୁଲୀ : (କାନ୍ଦି କାନ୍ଦି) କ'ଣ କରିବି ବାବୁ ? ତମେ କ'ଣ ମୋ ଧନକୁ ଫେରେଇ ଆଣି ଦେଇପାରିବ ?

ଭଦ୍ରଲୋକ: ମାଆ, ତମର କ'ଣ ଚୋରି ହେଇଛି ଆଗେ କୁହ ।

ବେଙ୍ଗୁଲୀ : (କାନ୍ଦି କାନ୍ଦି) ମୋ ଗିରସ୍ତକୁ କିଏ ଚୋରେଇ ନେଇଗଲା । ଆସିଲାବେଳେ କହୁଥିଲେ ବାଲିଯାତରାରେ ଭାରି ଚୋରି ହୁଏ । ଶେଷକୁ ତାଙ୍କୁ କିଏ ଚୋରି କ[illegible]ନେଇଗଲା । ମୁଁ କୁଆଡ଼େ ଯିବି, କ'ଣ କରିବି ? ମତେ ଦଶଦିଗ ଅନ୍ଧାର ଦୁଉଚି ।

[ଭିଡ଼ ଭିତରୁ ହସ ଶୁଭିଛି । 'ଗିରସ୍ତ ଚୋରି' ଆରେ ଏଟା ପୂରା ମଫ ଅଛି । ପାଗଳୀଟା କି କ'ଣ, ଚାଲରେ ଚାଲ, ଲୋକମାନେ ଚାଲିଯାଇଛନ୍ତି ।]

ଭଦ୍ରଲୋକ: ହଉ ମାଆ ! ତମେ ଜମା ବ୍ୟସ୍ତ ହୁଅନା । ତମ ସ୍ୱାମୀ ମିଳିଯିବେ । ମଣିଷକୁ କିଏ କ'ଣ ଚୋରି କରେ ?

ବେଙ୍ଗୁଲୀ : କି କଥା କହୁଛ ବାବୁ ! ତ୍ରେତୟା ଯୁଗରେ ପୁଣି ମା' ସୀତାଙ୍କୁ ରାବଣ ଚୋରି କରିଥିଲା ନା ନାହିଁ ? ଦ୍ୱାପର ଯୁଗରେ ରକ୍ମିଣୀଙ୍କୁ କୃଷ୍ଣ ମହାପ୍ରଭୁ ଚୋରେଇ ନେଇ ବାହା ହୋଇଥିଲେ ନା ନାହିଁ ?

ଭଦ୍ରଲୋକ: (ବେଙ୍ଗୁଲୀକୁ ବୁଝିପାରି ହସିଛନ୍ତି) ସେ ଯୁଗ ଆଉ ଏ ଯୁଗ ଭିତରେ ଅନେକ ଫରକ୍ ମାଆ ।

ବେଙ୍ଗୁଲୀ : ଫରକ ? ଆଉ କ'ଣ ମିଣିପିଟା କୁହୁକ ଭଳିଆ କୁଆଡ଼େ ଉଭେଇଗଲା ?

Digitized by srujanika@gmail.com

ଭଦ୍ରଲୋକ: ହଉ ମାଆ ! ତମେ ମୋ ସହିତ ଆସ । ମୁଁ ତମକୁ ସୂଚନା କେନ୍ଦ୍ରକୁ ନେଇଯିବି ।

ବେଙ୍ଗୁଲୀ : ଏଁ, ସେ ପୁଣି କୋଉ ଜିନିଷ ? ନା, ନା, ମୁଁ ଏଇଠି ବସିଥିବି ସେ ନିଶ୍ଚୟ ମତେ ଖୋଜି ଖୋଜି ଏଇଠିକି ଆସିବେ ।

ଭଦ୍ରଲୋକ: ଶୁଣ । ମୁଁ ତମ ଭଲପାଇଁ କହୁଛି । ଏଠି ବସି ରହିଲେ ତମ ସ୍ୱାମୀଙ୍କୁ ପାଇବନି । ସୂଚନାକେନ୍ଦ୍ରକୁ ଯାଇ ସବୁକଥା କହିଲେ, ସେମାନେ ତମ ସ୍ୱାମୀଙ୍କୁ ସଙ୍ଗେ ସଙ୍ଗେ ଖୋଜି ଆଣିଦେବେ ।

[ବେଙ୍ଗୁଲୀ ରାଜି ହୋଇ ଭଦ୍ରଲୋକଙ୍କ ସହିତ ଯାଇଛି]

– ଅନ୍ଧାର –

## ।। ଦ୍ୱିତୀୟ ଦୃଶ୍ୟ ।।

[ସୂଚନା କେନ୍ଦ୍ର । ବେଙ୍ଗୁଲୀ ଓଢ଼ଣା ଟାଣି ବସିଛି । ପୋଲିସ୍ ତାଙ୍କୁ ପଚାରୁଛନ୍ତି ।]

ପୋଲିସ S.P : ଆଚ୍ଛା ମା ! ତମର କ'ଣ ଚୋରି ହେଇଛି ?

ବେଙ୍ଗୁଲୀ : ମୋ ଗିରସ୍ତକୁ କିଏ ଚୋରେଇ ନେଇଛି ।

S.P (ଆଶ୍ଚର୍ଯ୍ୟରେ) What ? ତମ ଗିରସ୍ତ I mean ତମ ସ୍ୱାମୀକି କିଏ ଚୋରେଇ ନେଇଛି ? ଏ କି ଅଜବ କଥା !

ବିଦ୍ୟାଧର: (ହସିଛି) ଆଲୋ ମା', ତମେ କ'ଣ ପ୍ରଥମ କରି ମଫସଲରୁ ସହରକୁ ଆସିଛ କି ?

S.P ଆଚ୍ଛା, ତମ ନାଁଟା କ'ଣ ?

ବେଙ୍ଗୁଲୀ : ମୋ ଗିରସ୍ତ ଚୋରି ହେଇଛି ବାବୁ ! ମୋ ନାଆଁରୁ ତମେ କ'ଣ ପାଇବ ?

ବିଦ୍ୟାଧର: ମାଲୋ ମା'ଆ ! ତମ ସ୍ୱାମୀକୁ ତମେ.ଫେରି ପାଇବାକୁ ଚାହୁଁଛ ନା ନାହିଁ ?

Digitized by srujanika@gmail.com

ବେଙ୍ଗୁଲୀ : (ମୁଣ୍ଡ ହଲେଇ ହଁ କହିଛି)

ବିଦ୍ୟାଧର : ଭଲକଥା । ତା'ହେଲେ ବାବୁ ଯାହା ପଚାରୁଛନ୍ତି, ତମେ ଠିକେ ଠିକେ ତା'ର ଉତ୍ତର ଦିଅ ମାଆ ।

S.P ହଁ, ତମ ନାଆଁ କ'ଣ ?

ବେଙ୍ଗୁଲୀ : ମୋ ନାଆଁ ଶିରିମତୀ ବେଙ୍ଗୁଲୀ ଦେଈ ।

S.P ତମ ସ୍ୱାମୀଙ୍କ ନାଁ କ'ଣ ?

ବେଙ୍ଗୁଲୀ : (ନୀରବ)

S.P (ଜୋର୍‌ରେ) ମୁଁ ପଚାରୁଛି ପରା ତମ ସ୍ୱାମୀଙ୍କ ନାଆଁ କ'ଣ କୁହ ?

ବେଙ୍ଗୁଲୀ : (ନୀରବ)

S.P ଆଚ୍ଛା ଲୋକ ! ଆରେ ତମ ସ୍ୱାମୀଙ୍କ ନାଆଁ କୁହ ।

ବିଦ୍ୟାଧର : ମାଆ ! ବାବୁ ପରା ତମ ସ୍ୱାମୀଙ୍କ ନାଁ ପଚାରୁଛନ୍ତି ।

ବେଙ୍ଗୁଲୀ : କି କଥା କହୁଛ ପୁଲିସବାବୁ ! ଗିରସ୍ତ ନାଁ କ'ଣ କୋଉ ସ୍ତିରି ତୁଣ୍ଡରେ ଧରେ ? କି ପାପକଥାଗୁଡ଼ା କହୁଛ ମ !

S.P ଓଃ ! କି ଆଶ୍ଚର୍ଯ୍ୟ ଲୋକ । ନାଁ ନ ଜାଣିଲେ ଆମେ ତାଙ୍କୁ ଖୋଜିବୁ କେମିତି ?

ବିଦ୍ୟାଧର : ସାର୍ ! ମଫସଲୀ ଲୋକ । ସ୍ୱାମୀ ନାଆଁ ଧରିବା ପାପ ବୋଲି ଭାବନ୍ତି ।

S.P (ବିରକ୍ତିରେ) ତମେ ଚୁପକର ବିଦ୍ୟାଧର । ନାଁ ନ ଜାଣିଲେ ଆମେ କ'ଣ କରିପାରିବା ? ଆଚ୍ଛା ମା', ଏଥର ନାଁଟା କହିଦିଅ ।

ବେଙ୍ଗୁଲୀ : ଥରେ ତ କହିଲି । ଜୀବ ଚାଲିଯିବ ପଛକେ ନାଁଟା ତୁଣ୍ଡରେ ଧରିବିନି ।

S.P (ବିରକ୍ତ ହୋଇ) ଓଃ ! Stupid ! ସ୍ୱାମୀଙ୍କ ନାଁ ଯଦି ନ କହିବ ତେବେ ତମ ସ୍ୱାମୀ ଆଉ ମିଳିବେନି ବୁଝିଲ ?

ବିଦ୍ୟାଧର : ରୁହନ୍ତୁ ସାର୍ ! ରାଗନ୍ତୁନି । ମୁଁ ତାଙ୍କୁ ବୁଝେଇ ଦଉଛି । (ବେଙ୍ଗୁଲିକୁ

Digitized by srujanika@gmail.com

କଅଁଳେଇ କହିଛି) ଆଲୋ ମାଆ ! ନାଁ ନ କହିଲେ ଗିରସ୍ତକୁ ପାଇବ କେମିତି ?

ବେଙ୍ଗୁଲୀ : କେମିତି କହିବି ବା ପୁଲିସବାବୁ ।

ବିଦ୍ୟାଧର : ହଉ ହେଲା ନାଁଟା direct ନ କହିଲେ ନାହିଁ । ଠାରରେ କହିଦିଅ । ଆମେ ବୁଝିଯିବୁ ।

ବେଙ୍ଗୁଲୀ : ଠାରରେ କହିବି ? ହଉ (ଭାବିଛ) ଉଁ... । ହଁ ବାବୁ S.P – କ'ଣ କୁହ ।

ବେଙ୍ଗୁଲୀ : ତାଙ୍କ ନାଁ- ତାଙ୍କ ନାଁ.. ।

ବିଦ୍ୟାଧର : କହୁନା, କୁହ ।

ବେଙ୍ଗୁଲୀ : ତାଙ୍କ ନାଆଁ ଦି' କୋଳଥରୁ କୋଳଥେ ।

S.P ଏଁ ? ଦି' କୋଳଥରୁ କୋଳଥେ । ବିଦ୍ୟାଧର ଏଥର ସମ୍ଭାଳ ।

ବିଦ୍ୟାଧର : ଦି' କୋଳଥରୁ କୋଳଥେ । ମରିଗଲା ମଣିଷ ।

S.P କ'ଣ କିଛି ବୁଝିପାରୁଛ ?

ବିଦ୍ୟାଧର : (ମୁଣ୍ଡ କୁଣ୍ଡାଇ) ନାଇଁ ସାର୍; ମୁଁ ତ କିଛି ବୁଝିପାରୁନି ।

S.P ଭାରି ଢୋର୍ ଦେଇ କହିପକଉଥିଲେ ଠାରରେ କୁହ । ଏବେ କ'ଣ ନା ବୁଝିପାରୁନି । ଶୀଘ୍ର ଏ ଠାରରେ ସୂତ୍ର ଖୋଜି ଶୀଘ୍ର କୁହ ।

ବିଦ୍ୟାଧର : (ହାତ ମଳି) ସାର୍ ! ମୁଁ ଗଣିତରେ ଭାରି ଦୁର୍ବଳ ଥିଲି ଆଜ୍ଞା ! ଏହି ସୂତ୍ର ମନେ ରଖିବା ପାଇଁ ମାଟ୍ରିକ୍ ପରୀକ୍ଷା ଦବାଯାଏ Daily ଶ୍ରେଣୀରେ ଅଙ୍କ ପିରିୟଡ୍‌ରେ ଗଧଟୋପି ପିନ୍ଧି forward march କରୁଥିଲି ସାର୍ !

S.P ବିଦ୍ୟାଧର !

ବିଦ୍ୟାଧର : ତା' ଛଡ଼ା ସାର୍ ଏ ତ ଅଙ୍କ ପାଠ ନୁହେଁ, Agriculture । ମୁଁ ତ ଚୋର ଧରିବା ପାଠ ପଢ଼ି ଚାକିରି କରିଛି । ଚାଷ କାମ ବିଷୟରେ ମୋର ଜ୍ଞାନ କମ୍ । ଆପଣ ଯଦି... ।

S.P (ବିରକ୍ତିରେ) ବିଦ୍ୟାଧର ! ମୁଁ ବି ତମ ଭଳି ଚୋର ଧରିବା ପାଠ

Digitized by srujanika@gmail.com

ପଢ଼ିଛି, ଚାଷ କରିବା ପାଠ ନୁହଁ । ତମର ଏ ବାଜେ କଥା ମତେ ଜମା ଭଲ ଲାଗୁନି ।

ବିଦ୍ୟାଧର : କ'ଣ କରିବି ଆଜ୍ଞା ! ମୋର ଏ ନଡ଼ିଆ ଭଳି ଛୋଟିଆ ମୁଣ୍ଡଟାରେ କିଛି ପଶୁନି । (ସ୍ୱଗତୋକ୍ତି) ହଁ, ମାଣ୍ଡିଆ ଜାଉ ତ ଖୋଇଛି... ଡ୍ୟାସ କରିବି ମୁଁ । ଟିକେ ଚିନ୍ତାକରେ କ'ଣ ? ଦି' କୋଳଥରୁ କୋଳଥେ । ଦି' କୋଳଥରୁ କୋଳଥେ ହୁଁ... (ଖୁସିରେ ଡେଇଁପଡ଼ି) ପାଇଗଲି, ପାଇଗଲି ସାର୍ ! ଇଉରେକା... ଇଉରେକା ।

S.P ବିଦ୍ୟାଧର ! କ'ଣ ପାଇଗଲ ଶୀଘ୍ର କୁହ । ଏମିତି ମାଙ୍କଡ଼ ଭଳିଆ ଡେଉଁଛ କାହିଁକି ?

ବିଦ୍ୟାଧର : ସୂତ୍ର ପାଇଗଲି ଆଜ୍ଞା । ଆର୍କମେଡିସଙ୍କ ଭଳିଆ ଜଟିଳ ତତ୍ତ୍ୱର ସୂତ୍ର ପାଇଗଲି ।

S.P ଏତେ ଉପକ୍ରମଣିକା ନ ଦେଇ ସିଧାସଳଖ କୁହ ।

ବିଦ୍ୟାଧର : କହୁଛ ଆଜ୍ଞା କହୁଛ । ଗାଁ'ରେ ଯେମିତି ବିଭିନ୍ନ କିସମର ଧାନ, ମୁଗ, ବିରି ଇତ୍ୟାଦି ଚାଷ ହୁଏ ସେମିତି ଦୁଇ କିସମର କୋଳଥ ଚାଷ ହୁଏ । ଗୋଟିଏ ହଉଛି ଚଇତା କୋଳଥ ଆଉ ଗୋଟିଏ କୁଂଜିଆ କୋଳଥ ।

S.P (ବିରକ୍ତରେ) ବିଦ୍ୟାଧର ! ମୁଁ ତମଠାରୁ ଚାଷ ବିଷୟରେ ଶିକ୍ଷା ନେବାକୁ ଏଠି ଚାକିରି କରିନି ।

ବିଦ୍ୟାଧର : ଆହା, ଆପଣ ରାଗୁଛନ୍ତି କାହିଁକି ସାର୍ । ସେଇ ନାଁରେ ପରା ସବୁ ଅଛି । ଆଚ୍ଛା ମାଆ ! ଏଥର କହିଲ, ତମ ଗିରସ୍ତଙ୍କ ନାଁ କ'ଣ ଚଇତା ନା କୁଂଜିଆ ?

ବେଙ୍ଗୁଲି : (ଲାଜେଇଯାଇ) ଆଗ ନାଁଟା ମ ବାବୁ ।

ବିଦ୍ୟାଧର : ଏଥର ଲେଖନ୍ତୁ ସାର୍ । ତାଙ୍କ ସ୍ୱାମୀଙ୍କ ନାଆଁ ଚଇତା ।

S.P ଚଇତା କ'ଣ ? ଆରେ ତାଙ୍କ tittle କ'ଣ ?

Digitized by srujanika@gmail.com

କଅଁଳେଇ କହିଛି) ଆଲୋ ମାଆ ! ନାଁ ନ କହିଲେ ଗିରସ୍ତକୁ ପାଇବ କେମିତି ?

ବେଙ୍ଗୁଲୀ : କେମିତି କହିବି ବା ପୁଲିସବାବୁ ।

ବିଦ୍ୟାଧର: ହଉ ହେଲା ନାଁଟା direct ନ କହିଲେ ନାହିଁ । ଠାରରେ କହିଦିଅ । ଆମେ ବୁଝିଯିବୁ ।

ବେଙ୍ଗୁଲୀ : ଠାରରେ କହିବି ? ହଉ (ଭାବିଛ) ଉଁ... । ହଁ ବାବୁ S.P – କ'ଣ କୁହ ।

ବେଙ୍ଗୁଲୀ : ତାଙ୍କ ନାଁ- ତାଙ୍କ ନାଁ.. ।

ବିଦ୍ୟାଧର: କହୁନା, କୁହ ।

ବେଙ୍ଗୁଲୀ : ତାଙ୍କ ନାଆଁ ଦି' କୋଳଥରୁ କୋଳଥେ ।

S.P ଏଁ ? ଦି' କୋଳଥରୁ କୋଳଥେ । ବିଦ୍ୟାଧର ଏଥର ସମ୍ଭାଳ ।

ବିଦ୍ୟାଧର: ଦି' କୋଳଥରୁ କୋଳଥେ । ମରିଗଲା ମଣିଷ ।

S.P କ'ଣ କିଛି ବୁଝିପାରୁଛ ?

ବିଦ୍ୟାଧର: (ମୁଣ୍ଡ କୁଣ୍ଡାଇ) ନାଇଁ ସାର୍; ମୁଁ ତ କିଛି ବୁଝିପାରୁନି ।

S.P ଭାରି ଚୋର୍ ଦେଇ କହିପକଉଥିଲେ ଠାରରେ କୁହ । ଏବେ କ'ଣ ନା ବୁଝିପାରୁନି । ଶୀଘ୍ର ଏ ଠାରରେ ସୂତ୍ର ଖୋଜି ଶୀଘ୍ର କୁହ ।

ବିଦ୍ୟାଧର: (ହାତ ମଳି) ସାର୍ ! ମୁଁ ଗଣିତରେ ଭାରି ଦୁର୍ବଳ ଥିଲି ଆଜ୍ଞା ! ଏହି ସୂତ୍ର ମନେ ରଖିବା ପାଇଁ ମାଟ୍ରିକ୍ ପରୀକ୍ଷା ଦବାଯାଏ Daily ଶ୍ରେଣୀରେ ଅଙ୍କ ପିରିୟଡ୍‌ରେ ଗଧଟୋପି ପିନ୍ଧି forward march କରୁଥିଲି ସାର୍ !

S.P ବିଦ୍ୟାଧର !

ବିଦ୍ୟାଧର: ତା' ଛଡ଼ା ସାର୍ ଏ ତ ଅଙ୍କ ପାଠ ନୁହେଁ, Agriculture । ମୁଁ ତ ଚୋର ଧରିବା ପାଠ ପଢ଼ି ଚାକିରି କରିଛି । ଚାଷ କାମ ବିଷୟରେ ମୋର ଜ୍ଞାନ କମ୍ । ଆପଣ ଯଦି... ।

S.P (ବିରକ୍ତିରେ) ବିଦ୍ୟାଧର ! ମୁଁ ବି ତମ ଭଳି ଚୋର ଧରିବା ପାଠ

Digitized by srujanika@gmail.com

ପଢ଼ିଛି, ଚାଷ କରିବା ପାଠ ନୁହଁ । ତମର ଏ ବାଜେ କଥା ମତେ ଜମା ଭଲ ଲାଗୁନି ।

ବିଦ୍ୟାଧର : କ'ଣ କରିବି ଆଜ୍ଞା ! ମୋର ଏ ନଡ଼ିଆ ଭଳି ଛୋଟିଆ ମୁଣ୍ଡଟାରେ କିଛି ପଶୁନି । (ସ୍ୱଗତୋକ୍ତି) ହଁ, ମାଣ୍ଡିଆ ଜାଉ ତ ଖୋଇଛି... ଡ୍ୟାସ କରିବି ମୁଁ । ଟିକେ ଚିନ୍ତାକରେ କ'ଣ ? ଦି' କୋଳଥରୁ କୋଳଥେ । ଦି' କୋଳଥରୁ କୋଳଥେ ହୁଁ... (ଖୁସିରେ ଡେଇଁପଡ଼ି) ପାଇଗଲି, ପାଇଗଲି ସାର୍ ! ଇଉରେକା... ଇଉରେକା ।

S.P ବିଦ୍ୟାଧର ! କ'ଣ ପାଇଗଲ ଶୀଘ୍ର କୁହ । ଏମିତି ମାଙ୍କଡ଼ ଭଳିଆ ଡେଉଁଛ କାହିଁକି ?

ବିଦ୍ୟାଧର : ସୂତ୍ର ପାଇଗଲି ଆଜ୍ଞା । ଆର୍କମେଡିସଙ୍କ ଭଳିଆ ଜଟିଳ ତତ୍ତ୍ୱର ସୂତ୍ର ପାଇଗଲି ।

S.P ଏତେ ଉପକ୍ରମଣିକା ନ ଦେଇ ସିଧାସଳଖ କୁହ ।

ବିଦ୍ୟାଧର : କହୁଛ ଆଜ୍ଞା କହୁଛ । ଗାଁ'ରେ ଯେମିତି ବିଭିନ୍ନ କିସମର ଧାନ, ମୁଗ, ବିରି ଇତ୍ୟାଦି ଚାଷ ହୁଏ ସେମିତି ଦୁଇ କିସମର କୋଳଥ ଚାଷ ହୁଏ । ଗୋଟିଏ ହଉଛି ଚଇତା କୋଳଥ ଆଉ ଗୋଟିଏ କୁଂଜିଆ କୋଳଥ ।

S.P (ବିରକ୍ତରେ) ବିଦ୍ୟାଧର ! ମୁଁ ତମଠାରୁ ଚାଷ ବିଷୟରେ ଶିକ୍ଷା ନେବାକୁ ଏଠି ଚାକିରି କରିନି ।

ବିଦ୍ୟାଧର : ଆହା, ଆପଣ ରାଗୁଛନ୍ତି କାହିଁକି ସାର୍ । ସେଇ ନାଁରେ ପରା ସବୁ ଅଛି । ଆଚ୍ଛା ମାଆ ! ଏଥର କହିଲ, ତମ ଗିରସ୍ତଙ୍କ ନାଁ କ'ଣ ଚଇତା ନା କୁଂଜିଆ ?

ବେଙ୍ଗୁଲି : (ଲାଜେଇଯାଇ) ଆଗ ନାଁଟା ମ ବାବୁ ।

ବିଦ୍ୟାଧର : ଏଥର ଲେଖନ୍ତୁ ସାର୍ । ତାଙ୍କ ସ୍ୱାମୀଙ୍କ ନାଆଁ ଚଇତା ।

S.P ଚଇତା କ'ଣ ? ଆରେ ତାଙ୍କ tittle କ'ଣ ?

Digitized by srujanika@gmail.com

ବିଦ୍ୟାଧର: ଆଲୋ ମା', ତମ ସ୍ୱାମୀ କ'ଣ ବେହେରା, ଦାସ, ମିଶ୍ର ନା ମହାପାତ୍ର ?

ବେଙ୍ଗୁଲୀ : ସେଇ ପଧାନ ମ ବାବୁ ।

ବିଦ୍ୟାଧର: ଲେଖନ୍ତୁ ଆଜ୍ଞା ଚଇତା ପ୍ରଧାନ ।

S.P ତମ ଗାଁ' ନାଁ କ'ଣ କହିଲ ମାଆ ।

ବିଦ୍ୟାଧର: କୁହ ମାଆ, ତମ ଗାଁ' ନାଁଟା କହିଦେଲ । ନାଆଁ ସହିତ ଗାଆଁ ଠିକଣା ନ ଜାଣିଲେ ଆମେ କେମିତି ତମ ଗିରସ୍ତକୁ ଖୋଜି ପାଇବୁ । ଗାଁ' ନାଁଟା କହିଦିଅ ।

ବେଙ୍ଗୁଲୀ : କି ଅଖାଡୁଆ କଥାଗୁଡ଼ା ପଚାରୁଛମ ବାବୁ । ଗାଁ' ନାଁଟା ପରା ଆମ ଶ୍ୱଶୁରଙ୍କ ନାଁରେ ପଡ଼ିବ ।

ବିଦ୍ୟାଧର: ମରିଗଲା ମଣିଷ । କି ଅଡୁଆରେ ପଡ଼ିଲା । ଏ ଲୋକଗୁଡ଼ାକ କେମିତିକା କେଜାଣି ? ଜାଣିଶୁଣି ଶାଶୁ, ଶ୍ୱଶୁର, ଦେଢ଼ଶୁର, ସ୍ୱାମୀଙ୍କ ନାଁରେ ଗାଁ' ନାଆଁ ରଖିଛନ୍ତି ।

S.P ତମେ ଯଦି ଏମିତି ଆମକୁ ପ୍ରତ୍ୟେକ କଥାରେ ଅସହଯୋଗ କରିବ, ଆମେ ତମକୁ କେମିତି ସହଯୋଗ କରିବୁ ମାଆ । ଯୁଗ ଯାଇ କୋଉଠି ହେଲାଣି । ନାଁ ଧରିଲେ କି ପାପ ହେଇଯିବ କେଜାଣି ? ହୁଁଃ ।

ବେଙ୍ଗୁଲୀ : ଆମ ଚଉଦପୁରୁଷରୁ ଯାହା ଚଳିଆସୁଚିନା, କଥା ପଦକରେ କ'ଣ ସବୁ ବଦଳିଯିବ ?

S.P (କଟମଟ ଅନେଇ) ବିଦ୍ୟାଧର ! ଏଥର ଠାର ପ୍ରୟୋଗ କର ।

ବିଦ୍ୟାଧର: ହଉ ଆଜ୍ଞା କରୁଛି । ମୋ ନାଁଟା ଯେମିତି ବିଦ୍ୟାଧର ବୁଦ୍ଧିଟା ବି ମୋର ସେମିତି ପ୍ରଖର । ହଉ ମାଆ, ଏଥର ଗାଁ' ନାଁଟା ବି ଠାରରେ କୁହ ।

ବେଙ୍ଗୁଲୀ : (ଗେହ୍ଲେଇ ହେଇ) ଠାରରେ କହିବି ବାବୁ ?

Digitized by srujanika@gmail.com

ବିଦ୍ୟାଧର : ହଁ କହିଦିଅ ମାଆ । ଆଉ ଡେରି କାହିଁକି ? ତମଠାରୁ ସାର ବାହାର କରିବା ପାଇଁ ମତେ ପୁଣି କମ୍ପ୍ୟୁଟର ଭଳିଆ ସୂତ୍ର ଖୋଜିବାକୁ ପଡ଼ିବ । କୁହ ମାଆ କୁହ ।

ବେଙ୍ଗୁଲୀ : (ଚିନ୍ତା କରି) କହୁଛି... ଏଁ... ଆମ ଗାଁ ନାଁ ସୀତାପତି ପିତାପୁର ।

ବିଦ୍ୟାଧର : (ରାଗରେ) ବିଦ୍ୟାଧର ।

ବିଦ୍ୟାଧର : ଆପଣ ଆଉ ଏତେ ଏଡ଼େ ଆଖିରେ ମତେ ଅନାନ୍ତୁନି ଆଜ୍ଞା । ମୋ ବୁଦ୍ଧିର ମେସିନ୍‌ଟାକୁ ଟିକେ ନିରୋଳାରେ କାମ କରିବାକୁ ଦିଅନ୍ତୁ । ହୁଁ କ'ଣ ହେଲା, ସୀତାପତି ପିତାପୁର... ସୀତାପତି ପିତାପୁର (ବାରମ୍ବାର କହି ଚାଲିଛି)

ବେଙ୍ଗୁଲି : କ'ଣ ଏତେ ଫଟେଇ ହଉଛ ମ ବାବୁ ।

S.P ବିଦ୍ୟାଧର କ'ଣ କିଛି ପାଇଲ ?

ବିଦ୍ୟାଧର : ସୀତାପତି ପିତାପୁର (ଚିନ୍ତାକରି) ଅର୍ଥାତ୍ ରାବଣ ହରଣ କରିନେଇଥିବା ସୀତା ଠାକୁରାଣୀଙ୍କ ପତି... ପତି ଅର୍ଥ ସ୍ୱାମୀ । ହଁ, ସୀତାଙ୍କ ସ୍ୱାମୀ ହେଲେ ପ୍ରଭୁ ଶ୍ରୀରାମଚନ୍ଦ୍ର । ତାଙ୍କ ବାପା ହେଲେ ଦଶରଥ । ସୀତାପତି ପିତାପୁର ଅର୍ଥାତ୍ ଦଶରଥପୁର । (ଖୁସିରେ) ପାଇଗଲି ଆଜ୍ଞା । ଏଥର ବି ଏ ବିଦ୍ୟାଧର hundred percent correct answer ଦେବ ।

S.P କ'ଣ ଏମିତି ଗୁଡ଼ାଏ ବକୁଛ ବିଦ୍ୟାଧର ?

ବିଦ୍ୟାଧର : ବକୁନି ଆଜ୍ଞା । ସୂତ୍ରକୁ ଧରି ଚକ୍ରହାର ବୃଦ୍ଧିରେ ଅଙ୍କ କଷି କଷି ପାଇଗଲି । ଯା'ଙ୍କ ଗାଁ ନାଁ ଦଶରଥପୁର । କ'ଣ ମା' ଠିକ୍ କହୁଛି ନା ?

ବେଙ୍ଗୁଲି : (ଖୁସିରେ) ହଁ ବାବୁ ! ଆପଣତ ପାଠୁଆ ନୋକ । ସବୁ ଜାଣିଛନ୍ତି ।

S.P ବିଦ୍ୟାଧର ! ଏଥର Announce କର ।

(ମାଇକ୍‌ରେ Announcement ଚାଲିଛି । କିଛି ସମୟ ପରେ

Digitized by srujanika@gmail.com

ଚଇତା ଆସିଛି । ବଭଭକ୍କଙ୍କଭମେର– "ଚଇତା ବାବୁ ଓରଫ୍ ଚଇତା ପ୍ରଧାନ । ଗ୍ରାମ- ଦଶରଥପୁର, ଜିଲ୍ଲା- ଯାଜପୁର । ତମର ଏକମାତ୍ର ସ୍ତ୍ରୀ ଶ୍ରୀମତୀ ବେଙ୍ଗୁଲୀ ଦେଈ ତମକୁ ହଜାଇ କାନ୍ଦି କାନ୍ଦି ଲୁହ ସିଙ୍ଘାଣି ଖାଇଗଲେଣି । ତମେ ଯୋଉଠି ଅଛ ଶୀଘ୍ର ଆସି ତାଙ୍କୁ ସୂଚନା କେନ୍ଦ୍ରରୁ ନେଇଯାଅ ।"

ଚଇତା (ଆସିଛି, ବେଙ୍ଗୁଲୀକୁ ଦେଖି ଖୁସିରେ) ଆଲୋ ବେଙ୍ଗୁଲୀ ।

ବେଙ୍ଗୁଲୀ : (ଚଇତାକୁ ଦେଖି କାନ୍ଦି କାନ୍ଦି ବାହୁନିଛି) ଏଁ ? ତେମେ ଫେରିଆଇଛ ? (ଚଇତା ମୁହଁ ଆଉଁସିଦେଇ) ମତେ ଏକା ଛାଡ଼ି ତମେ କୁଆଡ଼େ ଚାଲିଗଲ ହୋ ମୋ ମଥାସିନ୍ଦୂର । ମୁଁ କି ହରବର ହେଇ ଗଲି ହୋ ମୋ ନାଲିଶଙ୍ଖା । ଏ ପୁଲିସବାବୁ ମତେ ଯାହା ହରକତ କଲେ, ମୋ ପୁନେଇଁଚାନ୍ଦ । (କାନ୍ଦ ବନ୍ଦ କରି) ଆମ ଗାଁ' ଯାତରା ଏହାଠୁ ଖୁବ୍ ଭଲ । ଚାଲ ଆମ ଗାଁ'କୁ ଫେରିଯିବା । ନ ହେଲେ ଏ ଭିଡ଼ ଭିତରେ ପୁଣି କିଏ ଯଦି ତମକୁ ଚୋରେଇ ନେଲା ?

ଚଇତା (ହସି ବେଙ୍ଗୁଲୀର ଲୁହପୋଛି) ଧେତ୍, ଆଲୋ ହୁଣ୍ଡୀ କାନ୍ଦନା ଲୋ । ମଣିଷକୁ କିଏ କାହିଁକି ଚୋରେଇନବ ?

ଝ.ଚ ତମ ନାଁ ଚଇତା ପ୍ରଧାନ ?

ଚଇତା ଆଜ୍ଞା !

ଝ.ଚ ଇଏ ତମ ସ୍ତ୍ରୀ ବେଙ୍ଗୁଲୀ ଦେଈ ?

ଚଇତା ଆଜ୍ଞା ହଁ !

ବିଦ୍ୟାଧର : (ଥଟ୍ଟାରେ) ତମକୁ କିଏ ଚୋରେଇ ନେଇଥିଲା କି ହୋ ?

ଚଇତା ନାଇଁ ଆଜ୍ଞା । ଲୋକ ଗହଳିରେ ମୁଁ ବେଙ୍ଗୁଲୀ ହାତଟା ଛାଡ଼ି ଦେଇ ଆଉ ଜଣକର ହାତ ଧରି ପକେଇଥିଲି ।

ବିଦ୍ୟାଧର : ଆଉ ତମ ବେଙ୍ଗୁଲୀ ବି ଆଉ ଜଣକୁ ଗିରସ୍ତ ବୋଲି ଭାବି ତାଙ୍କ

Digitized by srujanika@gmail.com

ହାତକୁ ଜବର କରି ଧରିପକେଇଥିଲି ନୁହେଁ ?

ଚଇତା (ଲାଜୁଆ ହସ ହସି) ହଁ ବାବୁ ! ବେଙ୍ଗୁଲୀଟା ହୁଣ୍ଡୀଟାଏ ମ ।

ବିଦ୍ୟାଧର : ହୁଣ୍ଡୀଟାଏ ? ହୁଁ... । ଆମକୁ ଘଣା ପେଲେଇ ଦେଲେଣି ହୋ । ଚାରିଘଣ୍ଟା କାଳ ଠାରେ ସୂତ୍ର ଖୋଜି ଖୋଜି ମୁଣ୍ଡ ଝାମ୍ ମାରିଗଲାଣି । ଆଚ୍ଛା ଚଇତାବାବୁ ! ତମ ନାଁ ଆଉ ତମ ଗାଁ' ନାଁ ରଖିବାକୁ କ'ଣ ଆଉ କିଛି ମିଳିଲାନି ? ସବୁ ଖାଲି ଠାରଠୁର ନାମ ରଖିଦେଲ ?

ଚ ଇତା (ହସି) ମୁଁ କ'ଣ କରିବି ବାବୁ ? ପୂରୁବ ପୁରୁଷରୁ ଯାହା ଚଳିଆସୁଛିନା ।

ବି ାଧର : ପୂରୁବ ପୁରୁଷ ! ପୂରୁବ ପୁରୁଷକୁ ଏମିତି ଯାବୁଡ଼ି ଧରିଥା । ସମସ୍ତେ ଏମିତି କଲେ ନା ଆମ department ରେ ମଣିଷ କାମ ନ କରି ଭୂତମାନେ କାମ କରିବେ । ଆଉ ତମଭଳି କେତେ ବେଙ୍ଗବେଙ୍ଗୁଲୀ କୁଆଡ଼େ ହଜିଯିବେ ଯେ, ଏତେ ବଡ଼ ଦୁନିଆରେ ଖୋଜି ବାହାର କରିବା କାଠିକର ପାଠ ହେଇଯିବ ।

S.P ବିଦ୍ୟାଧର ଠିକ୍ କହିଛି ଚଇତା । ପାଠଶାଠ ନ ପଢ଼ିଲେ ମଣିଷର ଏଇଭଳି ଅବସ୍ଥା ହୁଏ । ବିଦ୍ୟାଧର ନ ଥିଲେ ତମ ଠିକଣା ପାଇବା ଅସମ୍ଭବ ହୋଇଥାନ୍ତା ।

ବିଦ୍ୟାଧର : (ଖୁସିରେ) ମାନିଲେଟି ଆଜ୍ଞା ! ଏ ବିଦ୍ୟାଧର ସିନା ପାଠରେ ଚିତପଟାଙ୍ଗ ମାରିଲା, ହେଲେ ଏଭଳି ଠାରଠୁର, ଗୁଣିଗାରେଡ଼ି, ଝାଡ଼ଫୁଙ୍କା କୋଉଥିରେ କିଏ ତାକୁ ପାରିବ ମ ! ମୋ ଲାଗି କେତେ ଲୋକଙ୍କର ଉପକାର ନ ହଉଛି କହିଲେ ? ଆମ ସନା ବୋଉ ଯଦି ଏକଥା ଶୁଣିବନା, ଖାଲି ଖୁସିରେ କୁରୁଳି ଉଠିବ, ଉଛୁଳି ଉଠିବ । ହେଃ... ହେଃ... ହେଃ... (ହସିଛି)

S.P (ବିରକ୍ତିରେ ଆଖି ତରାଟି ଅନେଇଛନ୍ତି) ବିଦ୍ୟାଧର !

Digitized by srujanika@gmail.com

ବିଦ୍ୟାଧର: ହଉ ହେଲା ଆଜ୍ଞା ! ଏଇ ଦେଖନ୍ତୁ ରାଣ ଖାଇଲାପରି ପାଟିରେ ଆଙ୍ଗୁଠି ଦେଇ କଥାଗୁଡ଼ାକୁ ଏମିତି ଅଟକେଇ ଦେବି ଯେ, ଆଉ କାହାର ଗିରସ୍ତ ଚୋରି ହେଲେ ନିଜେ ସମ୍ଭାଳିବେ...

ବେଙ୍ଗୁଲୀ : (ଚଇତାକୁ) ଚାଲ, ଗାଁ'କୁ ପଳେଇବା । ଆଉ କାହିଁକି ଏଠି ଠିଆହେଇ ରହିଲ ? ମୋ ଛାତି ପରା ସେତିକିବେଳୁ ଖାଲି ଦାଉଁ ଦାଉଁ ହେଇ ପଡୁଚି, ଉଠୁଚି । ଡାହାଣ ଆଖିଟା ଫଡ଼ଫାଡ଼ ହେଇ ଡେଉଁଚି ।

S.P ଏଭଳି ଅନ୍ଧବିଶ୍ୱାସ ମଣିଷ ଜୀବନରେ ଅନେକ ଅସୁବିଧା ସୃଷ୍ଟି କରେ । ଆଚ୍ଛା ଚଇତା ! ଗାଁ' ମାନଙ୍କରେ ତ ପ୍ରୌଢ଼ ଶିକ୍ଷାକେନ୍ଦ୍ର ଖୋଲିଲାଣି ।

ଚଇତା ହଁ ଆଜ୍ଞା ! ଆମ ଗାଁ'ରେ ବି ଅଛି । ମୋ ଭଳି ନୋକମାନେ ସଂଧ୍ୟାବେଳେ ସେଠିକି ପାଠ ପଢ଼ିବାକୁ ଯାଉଛନ୍ତି ।

S.P ଏଣିକି ତମେ ସେଠିକି ଯାଇ ଦି' ଅକ୍ଷର ପାଠ ଶିଖ । ତା'ସହିତ ବେଙ୍ଗୁଲୀକୁ ମଧ୍ୟ ପାଠ ପଢ଼ାଅ ।

ଚଇତା କ'ଣ କହୁଛନ୍ତି ଆଜ୍ଞା ? ଛତୁ ଉଠା କାଠ ନା ଏ ନିଶ ଉଠା ପାଠ ! ଏ ବୟସରେ କ'ଣ ପାଠ ମନେରହିବ ? ନାଇଁ ଆଜ୍ଞା ଯା' ନ ହେଇଚି ବାଳ କାଳେ ତା' କି ହୋଇବ ପାଚିଲା ବାଳେ ।

S.P ଚଇତା ! ଏସବୁ ମଣିଷ ମନର ଭୁଲଧାରଣା । ଆମ ଦେଶରେ ଏମିତି କେତେ କେତେ ବୟସ୍କ ପୁରୁଷ ଓ ମହିଳା ପାଠପଢ଼ି ଶିକ୍ଷିତ ହେଲେଣି ନା । ପାଠ ପଢ଼ିଲେ ତମେ କୋଉଠି ହାରିଯିବନି ବୁଝିଲ ? ଏଇ ଦେଖ, ବେଙ୍ଗୁଲି ଯଦି ପାଠ ପଢ଼ିଥାନ୍ତା, ତା ମନରେ ସ୍ୱାମୀ, ଶ୍ୱଶୁରଙ୍କ ନାଁ ଧରିବା ପାପ ବୋଲି ଅନ୍ଧବିଶ୍ୱାସ ନଥା'ନ୍ତା । ଆଉ ବିଦ୍ୟାଧର ଯଦି ଠାରର ଅର୍ଥ ବାହାର କରିପାରିନଥାନ୍ତେ, ତା'ହେଲେ କ'ଣ ହେଇଥାଆନ୍ତା କହିଲ ?

ଚଇତା ଏଥର ବୁଝିଗଲି ଆଜ୍ଞା ! ଆପଣ ଯାହା କହୁଛନ୍ତି ସବୁ ସତ ।

Digitized by srujanika@gmail.com

ଆଲୋ ବେଙ୍ଗୁଲୀ, ସବୁ ବୁଝିଲୁ ତ ?

ବେଙ୍ଗୁଲୀ : ଅଳ୍ପ ଅଳ୍ପ ବୁଝୁଛି ।

ଚଇତା ଏଣିକି ମୁଁ ପାଠପଢ଼ିବି । ଆଉ ତତେ ବି ପାଠ ପଢ଼େଇବି । ତତେ ଏଣିକି ଏ ଲାଜସରମ ସବୁ ଛାଡ଼ିବାକୁ ପଡ଼ିବ ।

ବେଙ୍ଗୁଲୀ : ମୁଁ ପାଠ ପଢ଼ିବି ? ସତ କହୁଛ ମୁଁ ପଢ଼ିବି ? (ହସିଛି)

ଚଇତା ହଁ, କାହିଁ କ'ଣ ହେଲା କି ?

ବେଙ୍ଗୁଲୀ : ମୋ ରାଣ, ସତ କହୁଛ ମୁଁ ପଢ଼ିବି ?

(ଖୁସିରେ ତାଳିମାରି ନାଚି ନାଚି)

ପାଠ ପଢ଼ିବି ମୁଁ ପାଠ ପଢ଼ିବି

ଜବାବ ସୁଆଲ କେତେ କରିବି ।

ଇଂରାଜୀରେ ମୁଁ କଥା କହିବି

ସହିସଙ୍ଗାତଙ୍କୁ ଚମକେଇ ଦେବି ।

କାହାକୁ କିଆଁ ଆଉ ଡରିବି ?

ପାଠ ପଢ଼ିବି ମୁଁ ପାଠ ପଢ଼ିବି ।

(ଚଇତା ହାତକୁ ଧରି ନାଚି ନାଚି ଘୂରିଯାଇଛି)

ଚଇତା (ହସି ହସି) ଆଲୋ ହେ ବେଙ୍ଗୁଲୀ ! ଦେଖୁଛୁ ବାବୁ ବେଙ୍ଗୁଲୀଟା ମୋର କେଡ଼େ ସୁଧାର ।

ବିଦ୍ୟାଧର : ଆହା, କି ସୁନ୍ଦର କବିତା । କି ସୁନ୍ଦର ଛନ୍ଦ, ତାଳ, ଲୟ, ଜ୍ଞାନ ! ଏତେ ଗୁଣ ଥାଇ ବେଙ୍ଗୁଲୀ ଦେବୀ ତମେ କି ଦୁର୍ବୁଦ୍ଧି ନ କଲ । ମିଛଟାରେ 'ଗିରସ୍ତ ଚୋରି' କେଶ୍ ଦାଏର୍ କରି ଆମ Department କୁ ଗୋଟାଏ ମସ୍ତବଡ଼ Challenge ଦେଇଗଲ । ଓହୋ ମୋ ମୁଣ୍ଡକୁ ବୁଦ୍ଧି ଜୁଟି ନ ଥିଲେ ପୁଲିସିଯାକ ଫୁଲିସିରେ ଗଣା ହୋଇଥାନ୍ତେ ହୋ ।

S.P ବିଦ୍ୟାଧର ! ତମ ଅଭ୍ୟାସ ତମେ ଛାଡ଼ିବନି ଦେଖୁଛି ।

Digitized by srujanika@gmail.com

ବିଦ୍ୟାଧର : ଭୁଲ୍ ହେଇଗଲା ଆଜ୍ଞା ! ଏଇ ଦେଖନ୍ତୁ ଚୁପ୍... । (ପାଟିରେ ହାତ ଦେଇଛି)

ଚଇତା ଆମେ ଏଥର ଯାଉଚୁ ଆଜ୍ଞା ! (ନମସ୍କାର କରିଛି) ଆଲୋ ବେଙ୍ଗୁଲି ବାବୁଙ୍କୁ ଓଳିକି ହ ।

ବେଙ୍ଗୁଲୀ : (ହସି ହସି ଗେହ୍ଲେଇ କହିଛ) ଓଳିକି ବାବୁ ! ମୋ ଦୋଷ ଧରିବନି ।

S.P ହଉ ହଉ । ଯାଅ ।

ବିଦ୍ୟାଧର : ପଥ ପଚାରି ଶ୍ୱଶୁର ଗୃହେ ଯିବ, ବାଲିଯାତରାକୁ ଆଉ ମନ ନ କରିବ । ନମସ୍କାର ।

S.P (ତାଗିଦ୍ ସ୍ୱରରେ) ବିଦ୍ୟାଧର !

ବିଦ୍ୟାଧର : ଭୁଲ୍ ହେଇଗଲା ଆଜ୍ଞା । ଏଥର ଶତକଡ଼ା ଶହେ ଭାଗ ଚୁ...ପ୍ ! (ପାଟିରେ ହାତ ଦେଇ ବନ୍ଦ କରିଛି)

(ଚଇତା ଓ ବେଙ୍ଗୁଲୀ ଚାଲିଯାଇଛନ୍ତି ।)

(ଅନ୍ଧାର)



**(ଆକାଶବାଣୀ, କଟକ କେନ୍ଦ୍ରରୁ ପ୍ରସାରିତ)**

Digitized by srujanika@gmail.com




ଅମିତାଭ୍ : Cricket player– ବୟସ ୨୬/୨୭ ପରେ ୪୦/୪୨

ଅମରେଶ : Cricket player– ବୟସ ୨୬/୨୭ ପରେ ୪୦/୪୨

ସମର : Cricket player– ବୟସ ୨୬/୨୭ ପରେ ୪୦/୪୨

ନନ୍ଦିତା : Athlet– ବୟସ- ୨୧/୨୨ ପରେ ୩୭/୩୮ ବର୍ଷ ।

ନୀରଜା : (ଛୋଟ) ବୟସ– ୧୦/୧୧

ନୀରଜା (ବଡ଼) ବୟସ– ୧୭/୧୮

Digitized by srujanika@gmail.com

## ॥ ପ୍ରଥମ ଦୃଶ୍ୟ ॥

[କୌଣସି ଏକ ଷ୍ଟାଡିୟମ୍ । କ୍ରିକେଟ୍ ଖେଳ ଚାଲିଛି ଓଡ଼ିଶା ଓ ଆନ୍ଧ୍ର ମଧ୍ୟରେ କ୍ରିକେଟ୍ କମେଣ୍ଟ୍ରିର Effect... ମଝିରେ ମଝିରେ ଦର୍ଶକମାନଙ୍କର ତାଳି ଓ ଆନନ୍ଦଧ୍ୱନି । ଅଜିତାଭ୍... ଅଜିତାଭ୍ ଧ୍ୱନି ଶୁଭୁଛି ।]

Commentry : ଅଜିତାଭ୍ ହେଉଛନ୍ତି ଆଜିର ମ୍ୟାଚ୍‌ରେ- ସମସ୍ତଙ୍କର ଆକର୍ଷଣ । ସେ ଖୁବ୍ ସୁନ୍ଦର ଭାବରେ ବ୍ୟାଟିଂ କରି- ଦଳର run ସଂଖ୍ୟା ବଢ଼ାଇ ଚାଲିଛନ୍ତି । ପଡ଼ିଆର ଡାହାଣପଟୁ ବୋଲିଂ କରୁଛନ୍ତି । ଆନ୍ଧ୍ରଦଳର ଏସ୍. ଚେନ୍ନାରେଡ୍‌ଡ଼ୀ । ହଁ ଅଜିତାଭ୍ ବଲ୍‌ଟିର ସମ୍ମୁଖୀନ ହୋଇଛନ୍ତି... ଛକ୍‌କା... (ହର୍ଷଧ୍ୱନି) ବଲ୍‌ଟି ଯାଇ ଗ୍ୟାଲେରୀ ମଧ୍ୟରେ ପଡ଼ିଛି । ଅମ୍ପାୟାର୍ ହାତ ହଲେଇ ଛକ୍‌କାର ନିର୍ଦ୍ଦେଶ ଦଉଛନ୍ତି ଏବଂ ଏଥି ସହିତ ଆଜିର ମ୍ୟାଚ୍‌ର ପରିସମାପ୍ତି ଘଟିଛି । ଅଜିତାମ୍ ବ୍ୟକ୍ତିଗତ ଭାବେ- ଶତକ ହାସଲ କରିବା ସଂଗେ ସଂଗେ ଓଡ଼ିଶା ଦଳ 4 run ରେ ବିଜୟ ହାସଲ କରିଛି ।

[ଦର୍ଶକ ମହଲରୁ ଶୁଭୁଥାଏ- 'ଥ୍ରୀଚିଅରର୍ସ ଅଜିତାଭ୍... ଅଜିତାଭ୍... ଖେଳ ସମାପ୍ତିର ସୂଚନା]

ସମର Congratulation ଅଜିତାଭ୍ । Really, you are the proud of our team.

ଅମରେଶ : ବୁଝିଲୁ ଅଜିତାଭ୍ । ତୋ ପାଇଁ ଆଜି ଆମ team champion ହବାର ଗୌରବ ଅର୍ଜନ କଲା ।

Digitized by srujanika@gmail.com

ଅଜିତାଭ୍ : Thank ଏଥିପାଇଁ ମୁଁ ଏକା- ଗୌରବର ପାତ୍ର ନୁହେଁ । ତୁ କୋଉ ଖରାପ ଖେଳିଛୁ କି ? ତୁ ତ ୩ଟା ଉଇକେଟ୍ ନେଇଛୁ । ବୁଝିଲୁ ଅମରେଶ୍ । ଆମ ସମସ୍ତଙ୍କ ନିଷ୍ଠା ଓ ଏକାଗ୍ରତା ହିଁ ଆମ team ର ସଫଳତା ।

ସମର (କଥା ବଦଳେଇ) ଆରେ ହଁ, ଆମେ ଯାହା ଶୁଣୁଛୁ, ତାହା କ'ଣ ସତ ?

ଅଜିତାଭ୍ : କ'ଣ ?

ସମର ତୁ ନିଜେ କହନା । ତୋ ମୁହଁରୁ ଆମେ ଏତେବଡ଼ good news ଟା ଶୁଣିବାକୁ ଚାହୁଁ । ନା, କ'ଣ ଅମରେଶ୍ ?

ଅମରେଶ : ସମର ଠିକ୍ କହୁଛି ଅଜିତାଭ୍ ।

ଅଜିତାଭ : ଆବେ ! କଥାଟା ଖୋଲିକହିବା କ'ଣ ତୋ ଜାତକରେ ନାହିଁ ? ସମର ! ସବୁକଥାରେ ତୋର ଖାଲି ଗୌରଚନ୍ଦ୍ରିକା... ।

ସମର ଆରେ ନାଇଁମ ! କଥା କ'ଣ କି ଆମେ ଶୁଣୁଛୁ, ତୁ କୁଆଡ଼େ ନନ୍ଦିତାକୁ marriage କରୁଛୁ ବୋଲି ?

ଅଜିତାଭ : ଓ, ଏଇକଥା ! ଏଇଟା କୋଉ ନୂଆ କଥା ଯେ । ସମସ୍ତେ ଜାଣିଥିଲେ ତମେ କେମିତି ଜାଣିଲନି ?

ଅମରେଶ : Really ଅଜିତାଭ । ତୋ choice କୁ ମାନିବାକୁ ପଡ଼ିବ । ନିଜେ ଜଣେ ବିଶିଷ୍ଟ cricket player, ସେହିଭଳି ନନ୍ଦିତା ଭଳି ଜଣେ ସ୍ୱନାମଧନ୍ୟା Athlet କୁ ଜୀବନସଂଗିନୀ ବାଛିନେଲୁ । ଏଥର ଆଉ ଚିନ୍ତା କ'ଣ ? ଗୋଟେ କାମ କରିବୁ । ଜୀବନଟାକୁ ଘରସଂସାରରେ ଚାରିକାନ୍ଥ ଭିତରେ ବନ୍ଦୀ ନରଖି, ଆମର ଏ ବାରବାଟୀ ଷ୍ଟାଡିୟମ୍ ଭିତରେ କଟେଇ ଦବୁ । (ହସ)

ଅଜିତାଭ : ଏହା ମୋର ବହୁଦିନର ସ୍ୱପ୍ନ ବୁଝିଲୁ ? ମୋ ଖେଳକୁ ସାରାଜୀବନ ପ୍ରେରଣା ଦେବାଭଳି ସାଥୀଟିଏ ମୁଁ ଖୋଜୁଥିଲି, ପାଇଗଲି । ତା' ଛଡ଼ା ମୋର ଆଉ ଗୋଟାଏ- ବିରାଟ ଆଶା ମଧ୍ୟ ଅଛି ।

ସମର କ'ଣ ସେ ଆଶାଟା ଶୁଣେ ?

Digitized by srujanika@gmail.com

ଅଜିତାଭ : ଆମେ ଦୁଇଜଣ ଖେଳାଳି । ଏଣୁ ଆମର ଯେଉଁ ପୁଅ ହେବ, ଦେଖିବୁ ସେ ମଧ୍ୟ ବଡ଼ player ହେବ । ଓଡ଼ିଶା ଜିଣି ସାରା ଭାରତରେ ନାଁ ରଖିବ । ଦେଖିବୁ, ମୁଁ ମୋ ପୁଅକୁ all round କରି ଗଢ଼ିବି ।

ଅମରେଶ : ବାଃ ବାଃ ! ଆବେ, ଆଗେ ବାହା ନ ହେଉଣୁ ଏତେ ସ୍ୱପ୍ନ ଦେଖା ।

ସମର ଅଜିତାଭ୍ କିଛି ଭୁଲ୍ କହୁନି ଅମରେଶ । ସ୍ୱପ୍ନ ନ ଥିଲେ ଜୀବନର ମାନେ କିଛି ନାହିଁ । ହଉ, ଭାଇ ! ତୋ ବାହାଘର praty ରେ ଜୋରଦାର ଭୋଜିଟାଏ ହେଲେ ଆମେ ଖୁସ୍- ନା କ'ଣ ଅମରେଶ୍...

(ଏକ ସଂଗରେ ହସିଛନ୍ତି)

( ଅନ୍ଧାର)

## ॥ ଦ୍ୱିତୀୟ ଦୃଶ୍ୟ ॥

[ଅଜିତାଭ ଓ ନନ୍ଦିତାର ବିବାହ ସରିଯାଇଛି । ଦୂରରୁ ସାହାନାଇ ଶୁଭୁଥାଏ । ଚଉଠି ରାତିରେ ଅଜିତାଭ ଓ ନନ୍ଦିତା ।]

ଅଜିତାଭ : ଆରେ ବାଃ ! ଇଏ କ'ଣ ନନ୍ଦିତା ? ତମ ଭଳି ଜଣେ smart Athlet ଏମିତି ନବବଧୂ ବେଶରେ ପୁଣି, ଓଢ଼ଣା ଭିତରେ Really ତମକୁ ପାଇଁ ମୁଁ ବହୁତ ଖୁସି ନନ୍ଦିତା ।

ନନ୍ଦିତା ମୁଁ ବି ନିଜକୁ କମ୍ ଭାଗ୍ୟବତୀ ମନେକରୁନି । ତମଭଳି ଜଣେ ବିଶିଷ୍ଟ player ମତେ ପସନ୍ଦ କରିବ, ଏକଥା ମୁଁ କେବେ ବିଶ୍ୱାସ କରିନଥିଲି ।

ଅଜିତାଭ : ଉଁ ହୁ ! ତମେ କୋଉଗୁଣରେ କମ୍ ତ ? ତମେ ତ ଆମ ରାଜ୍ୟର ଖ୍ୟାତିସଂପନ୍ନ athlet ।

Digitized by srujanika@gmail.com

ନନ୍ଦିତା ଜାଣ ଅଜିତାଭ । ପିଲାଦିନରୁ ବାପା-ମାଆ- ପରିବାରର ସମସ୍ତଙ୍କଠାରୁ ଖେଳିବା ପାଇଁ ମୁଁ ଯଥେଷ୍ଟ ପ୍ରେରଣା ପାଇଛି । ମୋର ସାଂଗମାନେ କହୁଥିଲେ...

ଅଜିତାଭ : କ'ଣ କହୁଥିଲେ...

ନନ୍ଦିତା ସେମାନେ କହୁଥିଲେ, ବାହାଘର ପରେ ମୋ ଖେଳାଖେଳିରେ ଡୋରି ବନ୍ଧା ହେବ । ଏଥିପାଇଁ ମୁଁ ବହୁତ ଦୁଃଖ କରୁଥିଲି । କିନ୍ତୁ...

ଅଜିତାଭ : ଆଜି ସେ ଭୁଲ୍‌ଟା ଭାଙ୍ଗିଯାଇଛି । ଏଇଆ ତ ?

ନନ୍ଦିତା ତା'ହେଲେ ମୁଁ କ'ଣ ଆଗଭଳି ଖେଳିପାରିବି ?

ଅଜିତାଭ : ହଁ ! କାହିଁକି ନୁହେଁ । ତମର ସ୍ୱାମୀ ଯେ ଜଣେ sports man ।

ନନ୍ଦିତା କିନ୍ତୁ ତମ family ରେ କ'ଣ ସମସ୍ତେ ଏକଥା ପସନ୍ଦ କରିବେ ।

ଅଜିତାଭ : ତମେ ଧୀରେ ଧୀରେ ସବୁ ବୁଝିପାରିବ ନନ୍ଦିତା । ମୁଁ ତମକୁ କେବଳ ଘରର ଚାରିକାନ୍ଥ ଭିତରେ- ଗୃହବଧୂ ସଜାଇବାକୁ ଆଣିନି । ଆମ ଦୁଇଜଣଙ୍କର ସାଧନା ଖେଳ ଜଗତରେ ଏଇ ସ୍ମରଣୀୟ ସ୍ୱାକ୍ଷର ହୋଇରହିବ ନନ୍ଦିତା ।

ନନ୍ଦିତା ମୁଁ ସ୍ୱପ୍ନ ଦେଖୁନି ତ !

ଅଜିତାଭ : ସ୍ୱପ୍ନ ବି ସତ ହୁଏ ନନ୍ଦିତା ।

ନନ୍ଦିତା ଆଃ ! ମୁଁ ଯେ କେତେ ଖୁସି ।

ଅଜିତାଭ : ଆମ ଜୀବନରେ ଆହୁରି ସୁଖ ଭରିଯିବ । ଯେତେବେଳେ ଆମର କୁନି ପୁଅଟି ସାରାଭାରତରେ ବିଶିଷ୍ଟ ଖେଳାଳୀର ଗୌରବ ଅର୍ଜନ କରିବ ।

ନନ୍ଦିତା (ଲାଜରେ) ଇସ୍ ! ଆଉ ଠିକ୍ ତମ ଭଳି ଦୁଷ୍ଟ ହେବ ।

ଅଜିତାଭ : ଉଁ ହୁଁ ! ତମଭଳି Champion ବି ହବ ।

ନନ୍ଦିତା ଯାଃ... । (ଅନ୍ଧାର)

Digitized by srujanika@gmail.com

## ॥ ତୃତୀୟ ଦୃଶ୍ୟ ॥

[ଷ୍ଟାଡ଼ିୟମ୍ । ଅଭିତାଭ ଓ ସାଂଗମାନେ]

ସମର : ହାଲୋ ! ଅଭିତାଭ । ତୁ ଭାରି ଭାଗ୍ୟବାନ୍ । ଖେଳରେ award ପାଇଲୁ । ସହଧର୍ମିଣୀ ପାଇଲୁ ମନ ପସନ୍ଦର । ଆଉ କ'ଣ ଏବେ ବାପା ହେବାକୁ ଯାଉଛୁ ।

ଅଭିତାଭ : କିରେ, ତୋର କ'ଣ ଈର୍ଷା ହଉଛି କି ? ତୁ ବାପା ହଉନୁ । କିଏ ନା କରୁଛି କି ?

ସମର : ନାଇଁ ଭାଇ, ମନପସନ୍ଦର ସାଥୀ ପାଇବା କ'ଣ ଏତେ ସହଜ । ଆଚ୍ଛା କହିଲୁ ନନ୍ଦିତା ଭାଉଜ କେମିତି ଅଛନ୍ତି ? ତାଙ୍କୁ ବର୍ତ୍ତମାନ ଅବସ୍ଥାରେ ଯେତେ ଖୁସି ରଖିବୁ, ପିଲାଟା ସେତେ smart ହବ ।

ଅଭିତାଭ : ନନ୍ଦିତା ! She is very fine. ଆବେ ମୁଁ କ'ଣ ମୂର୍ଖ ହେଇଛି ? ଜାଣିଛୁ, ସବୁଦିନ ମୁଁ ତା'ସହିତ ବିଭିନ୍ନ match ବିଷୟରେ discuss କରୁଛି । ସବୁ match ଦେଖେଇବାକୁ ନଉଛି ।

ସମର : (ଆଶ୍ଚର୍ଯ୍ୟରେ) match ! ତୋ ମୁଣ୍ଡ ଖରାପ ନା କ'ଣ ? ଆରେ ଏ ଅବସ୍ଥାରେ ତୁ ତାଙ୍କୁ rest ନ ଦେଇ match ପୁରାଣ ଶୁଣଉଛୁ ?

ଅଭିତାଭ : ତୁ ସେ କଥା ବୁଝିପାରିବୁନି ସମର ।

ସମର : ଆରେ ଭାଇ ତୋର ଯେତେ ସବୁ ଅଜବ ଖିଆଲ । ଅଦ୍ଭୁତ ନିଶା ।

ଅଭିତାଭ : ନିଶା ନୁହେଁ ସାଧନା ! ମୁଁ କାହିଁକି ଏମିତି କରୁଛି ଜାଣୁ ?

ସମର : କାହିଁକି କରୁଛୁ କହ ।

ଅଭିତାଭ : ଗର୍ଭାବସ୍ଥାରେ ମାଆ ଯାହା କରେ, ତାର ପ୍ରଭାବ ପିଲା ଉପରେ ପଡ଼େ । ମୁଁ ଚାହେଁ ଆମର ସୁନ୍ଦର, ସୁସ୍ଥ ସବଳ ପୁଅଟିଏ ହେବ, ଆଉ ସେ ବାପା ଠାରୁ ବି ବହୁତ ବଡ଼ Player ହେବ । ସେଥିପାଇଁ ଏ match ପୁରାଣ ଶୁଣାଏ । ଏବେ ବୁଝିଲୁ ତ ?

Digitized by srujanika@gmail.com

ସମର Really ଅଜିତାଭ । ତୁ ହେଉଛୁ ମହାଭାରତର ଅର୍ଜୁନ ଆଉ ନନ୍ଦିତା ହେଉଛି ସୁଭଦ୍ରା । ଆଉ ତୋ ପୁଅ ହେବ ଅଭିମନ୍ୟୁ ପରି ବଡ଼ ବୀର । ବୁଝିଲୁ ଭାଇ, ଯାହା କର ପଛକେ, match ବିଷୟରେ ଯଦି ଅଧା ତଥ୍ୟ ଶୁଣାଇବୁନା- ତୋ ପୁଅ ଶେଷକୁ ଗୋବର ଗଣେଶ ହୋଇ ବାହାରିବ । ଏଣୁ ନନ୍ଦିତାକୁ ଜାଗ୍ରତ ରଖେଇ, ପୁରାଣ ଶୁଣା ଚାଲୁରଖ । ହୁଁ !... ପାଗଳ !

(ସମସ୍ତେ ହସିଛନ୍ତି)

– ଅନ୍ଧାର–

## ॥ ଚତୁର୍ଥ ଦୃଶ୍ୟ ॥

[ବେଡ଼ରୁମ୍- ରାତିର Effect ଅଜିତାଭ ଓ ନନ୍ଦିତା]

ନନ୍ଦିତା ଏଇ । ଶୁଣୁଛ !

ଅଜିତାଭ : ଉଁ, କ'ଣ ହେଲା ?

ନନ୍ଦିତା ଶୋଇପଡ଼ିଲଣି ?

ଅଜିତାଭ : ନାଁ ତ !

ନନ୍ଦିତା କ'ଣ ଏତେ ଭାବୁଛ କହିଲ ? ତମ ମୁହଁଟା ଉଦାସ ଦିଶୁଛି ।

ଅଜିତାଭ : ନାଁ ତ ! ତମେ ଶୋଇପଡ଼ ନନ୍ଦିତା ! ଅନେକ ରାତି ହେଲାଣି । ରାତି ଅନିଦ୍ରା ହେବାଟା ତମେ ପକ୍ଷେ କ୍ଷତିକାରକ ।

ନନ୍ଦିତା ମତେ ନିଦ ଆସୁନି । ଆଜି କିଛି ତମ experience ରୁ ଶୁଣାଇବନି ? ହଉ ହେଲା, କ୍ଷୀରଟା ପିଇଦିଅ ।

ଅଜିତାଭ : ନା, ଥାଉ

ନନ୍ଦିତା ଏଇ ଦେଖ, ମୁଁ ମନଦୁଃଖ କରିବି ।

ଅଜିତାଭ : ଛିଃ ! ମୋ ସୁନାଟା ପରା, ଜିଦ୍ କରନି । ମନଟା କାହିଁକି ଭଲ ଲାଗୁନି ।

ନନ୍ଦିତା କ'ଣ ହେଇଛି କୁହ । ମୋ ରାଣ କୁହନା ?

Digitized by srujanika@gmail.com

ଅଜିତାଭ : ନନ୍ଦିତା (ଟିକେ ରହି) ଆଚ୍ଛା କହିଲ ଆମର ପୁଅ ହବନା ଝିଅ ହବ ?

ନନ୍ଦିତା (ହସିଛି) ଓ... ଏଇ ଚିନ୍ତାରେ ମନକୁ ଏତେ କଷ୍ଟ ଦଉଛ ?

ଅଜିତାଭ : କୁହନା ନନ୍ଦିତା !

ନନ୍ଦିତା (ହସି) ମୁଁ କେମିତି କହିବି ଯେ, (ଧୀର ସ୍ୱରରେ) ତମେ ବାପା ତମେ ସ୍ରଷ୍ଟା, ତମେ କୁହନା... ତମେ କ'ଣ ଚାହଁ !

ଅଜିତାଭ : ତମେ କ'ଣ ଚାହଁ ନନ୍ଦିତା ?

ନନ୍ଦିତା ମୁଁ କହିବି ? ମୋର ସେମିତି କିଛି ନିର୍ଦ୍ଦିଷ୍ଟ କାମନା ନାହିଁ, ପୁଅ ହେଲେ ଖୁସି, ଆଉ ଝିଅ ହେଲେ ବି ଖୁସି ।

ଅଜିତାଭ : (ବ୍ୟସ୍ତ ହେଇ) ନା ନା... ନନ୍ଦିତା ! ଆମର ପୁଅ ହେବ । ମୋର ପୁଅ ଦରକାର ।

ନନ୍ଦିତା (ହସି) ହଉ ହେଲା ବାବା । ଆମର ପୁଅ ହବ । କିନ୍ତୁ...

ଅଜିତାଭ : କିନ୍ତୁ ନୁହେଁ ନନ୍ଦିତା... ନିଶ୍ଚୟ ପୁଅ ହେବ ।

ନନ୍ଦିତା ଓଃ ! ଏବେଠୁ ଏଇକଥା ନେଇ କାହିଁକି ଏତେ ଭାବୁଛ କହିଲ ? ପୁଅ ଝିଅ ଭିତରେ କ'ଣ ବା ପାର୍ଥକ୍ୟ ଅଛି ?

ଅଜିତାଭ : ନା, ନା, ନନ୍ଦିତା ! ମୋର ପୁଅ ଦରକାର ।

ନନ୍ଦିତା ଠିକ୍ ଅଛି । ଏବେ ଶୋଇପଡ଼ିଲ । ଛୋଟ ଛୁଆଙ୍କ ପରି ଏତେ ଜିଦ୍ କରିବା ଭଲ ନୁହେଁ ।

ଅଜିତାଭ : ତମେ ରାଗୁଛ ନନ୍ଦିତା !

ନନ୍ଦିତା ମୁଁ ରାଗୁଛି ! କାହିଁ ନାଁ ତ (ହସି ହସି) ତମ ଉପରେ ମୁଁ କ'ଣ ରାଗିପାରେ ?

ଅଜିତାଭ : Oh my sweet Nandita !

ନନ୍ଦିତା ଆଃ ! ଛାଡ଼ନା । ଲାଇଟ୍‌ଟା ଲିଭେଇଦିଏ ।

(ଅନ୍ଧାର)

Digitized by srujanika@gmail.com

## ॥ ପଞ୍ଚମ ଦୃଶ୍ୟ ॥

[Medical– ନନ୍ଦିତାର labour Pain ହେବାର ସୂଚନା । ପ୍ରତୀକ୍ଷାରତ ଅଜିତାଭ ।]

ଅଜିତାଭ : ଡକ୍ଟର ! ନନ୍ଦିତା କେମିତି ଅଛି ?

ଡକ୍ଟର ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ସେ ଭଲ ଅଛନ୍ତି । (ଭିତରକୁ ଚାଲିଯାଇଛନ୍ତି । କିଛି ସମୟ ପରେ ପୁଣି ଆସିଛନ୍ତି)

ଅଜିତାଭ : (ବ୍ୟସ୍ତ ହୋଇ) କ'ଣ ହେଲା ଡକ୍ଟର ?

ଡକ୍ଟର (ହସି) ଓହୋ ! ଆପଣତ ଏକଦମ୍ ଅଧୀର ହୋଇପଡୁଛନ୍ତି ! ଆଉ ଟିକେ ଅପେକ୍ଷା କରନ୍ତୁ । ବ୍ୟସ୍ତ ହୁଅନ୍ତୁନି ! (କିଛି ସମୟପରେ ପୁଣି ଆସିଛନ୍ତି)

ଡକ୍ଟର Hello ଅଜିତାଭ ! Congratulation ।

ଅଜିତାଭ : ନନ୍ଦିତା ଭଲ ଅଛିତ ଡକ୍ଟର ?

ଡକ୍ଟର Yes she is fine ! you are very lucky । ତୁମେ ଗୋଟିଏ ଖୁବ୍ ସୁନ୍ଦର ଝିଅର ବାପା ହେଇଛ ଅଜିତାଭ ।

ଅଜିତାଭ : କ'ଣ କହିଲେ ? (ଅବିଶ୍ୱାସ କରି) ଝିଅ ହେଇଛି ?

ଡକ୍ଟର ହଁ ! ନନ୍ଦିତାଦେବୀଙ୍କର ଝିଅ ହେଇଛି । Now, you may meet your baby and wife.

ଅଜିତାଭ : ଝିଅ ହେଇଛି ? ନା, ନା ଡକ୍ଟର ! ଆପଣ ଭୁଲ୍ ଦେଖିଛନ୍ତି । ମୋତେ ଠିକ୍ କରି କୁହନ୍ତୁ ପୁଅ ନା ଝିଅ ?

ଡକ୍ଟର ଡାକ୍ତରଙ୍କର ଦେଖିବାରେ ଭୁଲ୍ ହୁଏନି ! (ଚାଲିଯାଇଛି)

ଅଜିତାଭ : ନା... ନା... ।

Digitized by srujanika@gmail.com

(Cut to the stadium. ଦର୍ଶକ ଗ୍ୟାଲେରୀରେ ବସିଛି ଅଜିତାଭ୍ । କ୍ରିକେଟ୍ commentry ର Effect)

Commentry : ବିଶିଷ୍ଟ କ୍ରିକେଟ୍ ଖେଳାଳୀ ଅଜିତାଭ୍ ମହାପାତ୍ରଙ୍କର ସୁଯୋଗ୍ୟ ପୁତ୍ର ଅଂଶୁମାନଙ୍କର କ୍ରୀଡ଼ାକୌଶଳ ଆଜି ସମସ୍ତଙ୍କୁ ଅଭିଭୂତ କରିଛି । ସେ ଆଜିର match ରେ man of the match ସମ୍ମାନର ଅଧିକାରୀ ହେଇଛନ୍ତି । ତାଙ୍କ ବାପାଙ୍କ ପରି ସେ ମଧ୍ୟ ଆମ ରାଜ୍ୟର ନାଁ ରଖିପାରିଛନ୍ତି... (ସ୍ୱର ଲିଭିଯାଇଛି)

ଅଜିତାଭ : (ଦୁଃଖରେ) ଆଃ... ନା ନା ନା...

(ଆସିଛି ସମର ! କାନ୍ଧରେ ହାତ ରଖିବାରୁ ଦୃଷ୍ଟି ଫେରାଇଛି ଅଜିତାଭ୍)

ସମର ଅଜିତାଭ୍ ! ତୁ ଏଠି ଏମିତି ଏକା ଏକା ବସି କ'ଣ କରୁଛୁ ?

ଅଜିତାଭ : (ନୀରବ)

ସମର ଶୁଣିଲି, ତୁ ଗୋଟିଏ କନ୍ୟାରତ୍ନ ଲାଭ କରିଛୁ ? ଆରେ, କିଛି କହୁନୁ ଯେ ! କ'ଣ ଏତେ ଚିନ୍ତା କରୁଛୁ ?

ଅଜିତାଭ : (ଦୁଃଖରେ) ମୁଁ ଝିଅ ଚାହିଁନଥିଲି ସମର ! ମୋର ଶେଷ ଆଶା ଟିକକ ଏମିତି...

ସମର ଆରେ, ପୁଅଝିଅ ଭିତରେ ପ୍ରଭେଦ କ'ଣ ଅଛି ? ତା'ଛଡ଼ା ତୋର ତ ଇଏ first issue ଆଉ କ'ଣ ପୁଅ ହବନି ?

ଅଜିତାଭ : ନା ଭାଇ, ମୋର ଇଚ୍ଛା ଥିଲା ପ୍ରଥମେ ପୁଅଟିଏ ହେବ । ମୁଁ ତାକୁ ମୋରି ଭଳି ଗଢ଼ିବି । second issue ମୋର ଦରକାର ନଥିଲା ।

ସମର ଝିଅକୁ କ'ଣ ତୋ ଭଳି ଗଢ଼ିପାରିବୁନି ? ଏ ଯୁଗରେ ପୁଣି ତୋ ଭଳି ଜଣେ ଶିକ୍ଷିତ ମୁହଁରେ ଏକଥା ମୋଟେ ଭଲ ଲାଗୁନି ।

ଅଜିତାଭ : ତୁ କିଛି ବୁଝିପାରିବୁନି ସମର !

Digitized by srujanika@gmail.com

ସମର ହଉ ଠିକ୍ ଅଛି ! ରାତି ହେଇଆସିଲାଣି । ଏକୁଟିଆ ଏ ଷ୍ଟାଡ଼ିୟମ୍‌ରେ କେତେବେଳ ଯାଏ ବସିରହିବୁ ? ଚାଲ ଘରକୁ ଚାଲ ।

ଅଭିତାଭ : ତୁ ଯା ସମର ! ମୁଁ ଟିକେ ପରେ ଯିବି ।

ସମର ଅଭିତାଭ ! ନନ୍ଦିତା ତେଣେ hospital ରେ ତତେ ଚାହିଁଥିବ । ଆଉ ତୁ... । ବିଚାରୀ କ'ଣ ଭାବିବ କହିଲୁ? ଚାଲ, ଘରକୁ ଚାଲ । ଦେଖିବୁ ସବୁ ଠିକ୍ ହେଇଯିବ !

ଅଭିତାଭ : ସମର !

ସମର ଆରେ ଉଠ୍‌ନା । ଉଠ୍ ପରା କହିଲି ।

(ଚାଲିଯାଉଛନ୍ତି, ଅନ୍ଧାର)

## ॥ ଷଷ୍ଠ ଦୃଶ୍ୟ ॥

[ଝିଅ ୧୦/୧୨ ବର୍ଷର ହେଇଯାଇଛି । ସନ୍ଧ୍ୟା ସମୟର Effect]

ନନ୍ଦିତା କ'ଣ ନିରୁ ମୁହଁ ଶୁଖେଇଛୁ କାହିଁକି ? କ'ଣ ମିସ୍ କିଛି କହିଲେ ?

ନୀରଜା ମମି ! (କାନ୍ଦ ସ୍ୱରରେ)

ନନ୍ଦିତା ଆରେ କ'ଣ ହେଇଛି କହନା ! ଆଜି ତ ତୋର ଖୁସି ହେବା କଥା । ତମ ସ୍କୁଲର best student ଆଉ best social worker student ପାଇଁ ତୁ first prize ପାଇଛୁ ।

ନୀରଜା ମମି ! କହିଲ ମମି । ଆମ ସ୍କୁଲରେ ମୋ friend ମାନଙ୍କ ଡାଡ଼ି ଗାଡ଼ିନେଇ ସେମାନଙ୍କୁ ଛାଡ଼ିଆସୁଛନ୍ତି । prize day ଦିନ ସମସ୍ତଙ୍କ ଡାଡ଼ି, ମମି ଯାଉଛନ୍ତି । ସେମାନେ କେତେ ଖୁସି ହଉଛନ୍ତି, ଆଉ ମୋ ଡାଡ଼ି ! କାହିଁ ସେ ତ କେବେ ଦିନେ ମତେ ସ୍କୁଲ୍ ନେଉନାହାନ୍ତି ? ଆଜି ତମେ ଯାଇଥିଲ । କାହିଁ ଡାଡି ତ ଗଲେନି ?

Digitized by srujanika@gmail.com

ନନ୍ଦିତା : ନୀରୁ ! (ଆହତ ସ୍ୱରରେ) ଡାଡିଙ୍କର ଆଜି ଗୋଟେ urgent କାମ ଥିଲା ସେଥିପାଇଁ... ।

ନୀରଜ ହଁ, ମୁଁ ଜାଣେ ! ତମେ ମିଛ କହୁଛ । ସବୁଦିନ ଏମିତି ମିଛ କହିକି ଠକୁଛ । ଆଜି ତ ଡାଡ଼ି ଦିନସାରା ଘରେ ଥିଲେ ।

ନନ୍ଦିତା ନୀରୁ !!

ନୀରଜା ମୁଁ ଜାଣେ ମମି ! ଡାଡି ମତେ ଭଲପାଆନ୍ତିନି । ମତେ କେବେ ଆଦର କରି କୋଳରେ ବସାନ୍ତିନି । ମତେ ବୁଲେଇ ନିଅନ୍ତିନି– ମୁଁ ବି ଆଉ ଡାଡିଙ୍କୁ କଥା କହିବିନି । ମୁଁ ତାଙ୍କୁ ଭଲପାଇବିନି । ତାଙ୍କ ସାଙ୍ଗରେ କଟି ପକେଇଦେବି ।

ନନ୍ଦିତା ଛି– ନୀରୁ । ଗୁରୁଜନଙ୍କୁ ସେମିତି କୁହନ୍ତିନି । ଡାଡି ତତେ ବହୁତ ଭଲପାଆନ୍ତି । ହେଲେ...

ନୀରଜା ମମି ! ସତ କୁହ ମମି ! ଡାଡି କାହିଁକି ମୋ ଉପରେ ଏତେ ରାଗନ୍ତି କାହିଁକି ମତେ like କରନ୍ତିନି ?

ନନ୍ଦିତା (ଦୁଃଖରେ) ତୋ ଡାଡିଙ୍କର ଇଚ୍ଛା ଥିଲା, ତାଙ୍କର ଗୋଟିଏ ପୁଅ ହେବ । ଆଉ ସେ ହେବ ଡାଡିଙ୍କ ଭଳି ବିଖ୍ୟାତ player; ହେଲେ ପୁଅ ବଦଳରେ ତୁ ଆସିଗଲୁ । ସେଥିପାଇଁ ଡାଡିଙ୍କ ମନରେ ଟିକେ ଦୁଃଖ ରହିଯାଇଛି ।

ନୀରଜା ମମି ! ମୁଁ କ'ଣ ଖେଳିପାରିବିନି ମୁଁ କ'ଣ ଡାଡିଙ୍କ ଇଚ୍ଛା ପୂରଣ କରି ପାରିବିନି ? ଝିଅମାନେ କ'ଣ ଭଲ ଖେଳିପାରନ୍ତିନି ମମି !

ନନ୍ଦିତା ନିଶ୍ଚୟ ପାରିବୁରେ ନୀରୁ । ତୁ ନିଶ୍ଚୟ ପାରିବୁ । ଝିଅମାନେ ସବୁ କରିପାରନ୍ତି । ସବୁ କରିପାରୁଛନ୍ତି । ଏଇ ଦେଖ୍– ମୁଁ ତ ତୋରି ପରି ଝିଅଟିଏ । ମୁଁ କ'ଣ କେଉଁଥିରେ ଅପାରଗ ?

Digitized by srujanika@gmail.com

ନୀରଜା (ଖୁସିରେ) ସତରେ ମମି । ମୁଁ କେଡ଼େ ବୋକୀ । ମମି, ମୁଁ ଖେଳିବି ମମି । ବହୁତ ଭଲ ଖେଳିବି । ତମଭଳି... ଠିକ୍ ତମଭଳି... ଡାଡି କେତେ ଖୁସି ହେବେ ।

ନନ୍ଦିତା ହଁରେ ନୀରୁ । ତୁ ଖେଳିବୁ । ବହୁତ ନାଁ କରିବୁ ମୋ' ଠାରୁ ଆଉ ଡାଡିଙ୍କ ଠାରୁ ବି ବହୁତ ବେଶୀ.. ।

(ଅଜିତାଭ ରିକ୍ସାରୁ ଓହ୍ଲାଇଛନ୍ତି)

ନୀରଜା ମମି ! (ଅଜିତାଭଙ୍କ ପ୍ରବେଶ) (ନୀରଜା ଖୁସିରେ ତାଙ୍କ ପାଖକୁ ଦୌଡ଼ିଯାଇ)

ନୀରଜା ଡାଡି, ଡାଡି ମୁଁ ଖେଳିବି ଡାଡି ! ତମେ ମତେ coaching ଦବନା ଡାଡି ? ମୁଁ ବଡ଼ ଖେଳାଳି ହେବି, ତମଠାରୁ, ମମିଠାରୁ ବି ବହୁତ ବଡ଼ ।

ଅମିତାଭ : (ନୀରବ)

ନୀରଜା ତମେ କ'ଣ ମୋ ଉପରେ ରାଗିଛ ଡାଡି ! କ'ଣ କିଛି କହୁନା ଯେ... । ଏଇ ଦେଖ, ଆଜି ମୁଁ ସ୍କୁଲ୍‌ରେ କେତେ Prize ପାଇଛି । ଦୁଇ ଦୁଇଟାରେ 1st Prize । ଆମ ମିସ୍ କହିଲେ, ମୁଁ ଆମ ସ୍କୁଲ୍‌ର proud ଦେଖନା ଡାଡି... ।

ଅଜିତାଭ : (ବିରକ୍ତରେ) ହଉ ଯା, ମତେ disturb କରନା । ମୋ ଦେହ ଭଲଲାଗୁନି ।

ନୀରଜା ତମେ କ'ଣ ଖୁସି ନୁହଁ ଡାଡି ! ମତେ ଖେଳ ଶିଖାଇବନି ? ମତେ ଟିକେ 'ପପି' ଦବନି ?

ଅଜିତାଭ : ଓଃ... ଥରେ ପରା କହିଲି, ମୋ ଦେହ ଭଲ ଲାଗୁନି । ତୋର ଖେଳ ଶିଖିବା ଦରକାର ନାହିଁ । ମମିଠାରୁ ଅନ୍ୟ କିଛି ଶିଖ୍ ! (ଚାଲିଯାଇଛନ୍ତି)

Digitized by srujanika@gmail.com

ଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏ

ନୀରଜା : (କାନ୍ଦି) ମମି ! ମମି ! ଡାଡି ମତେ ଖେଳ ଶିଖାଇବେନି । ମତେ କେବେ ବି ଗେହ୍ଲା କରିବେନି ମ ।

ନନ୍ଦିତା ଛିଃ, ନୀରୁ । ମୁଁ ତତେ ଖେଳ ଶିଖେଇବି । କାନ୍ଦନା ମୋ ସୁନାଟା ପରା । ଦେଖିବୁ ଡାଡି, ତତେ ପୃଥିବୀର ସବୁ ଡାଡିଙ୍କ ଠାରୁ ବହୁତ ବେଶି ସ୍ନେହ କରିବେ... ଆଦର କରିବେ ।

ନୀରଜା ମମି !

ନନ୍ଦିତା ଛିଃ... କାନ୍ଦନା, ଆ, ମୋ କୋଳକୁ ଆ !

(କୋଳେଇ ନେଇଛନ୍ତି । – ଅନ୍ଧାର–)

## ॥ ସପ୍ତମ ଦୃଶ୍ୟ ॥

[ଏହା ଭିତରେ ନୀରଜା ବଡ଼ ହେଇଛି, ୧୬/୧୭ ବର୍ଷର । ସଂଧ୍ୟା ସମୟ । ଅଜିତାଭ drawing room ରେ ବସିଛନ୍ତି ।]

ଅଜିତାଭ୍ : ଆଜି କ'ଣ ନୀରୁ ଏତେବେଳ ଯାଏ ଫେରିନି ? (ଗମ୍ଭୀର ହୋଇ)

ନନ୍ଦିତା ଏଇ, ଆସୁଥିବ ଯେ ।

ଅଜିତାଭ୍ : ମୁଁ ତ ଲକ୍ଷ୍ୟ କରୁଛି, ସେ ଅନେକଦିନ ଧରି, ଖୁବ୍ ଡେରିରେ ଘରକୁ ଫେରୁଛି । ବାହାରେ ଏତେବେଳ ଯାଏ କ'ଣ କରୁଛି !

ନନ୍ଦିତା ନା, ଏମିତି ସାଙ୍ଗମାନଙ୍କ ସହିତ ଟିକେ ବୁଲାବୁଲି...

ଅଜିତାଭ : ମୁଁ କିନ୍ତୁ ଏସବୁ ପସନ୍ଦ କରେନା ନନ୍ଦିତା ! ଝିଅ ହେଇ ବାହାରେ ଏତେ ସମୟ ରହିବାଟା ଅଶୋଭନୀୟ । ଲୋକେ କ'ଣ କହିବେ ?

ନନ୍ଦିତା ତମେ ମିଛଟାରେ ବ୍ୟସ୍ତ ହେଉଛ । ନୀରୁ କ'ଣ ସେଭଳି ପିଲା ?

ଅଜିତାଭ : ତମ ସ୍ନେହମମତା ତାକୁ ଲଗାମ୍‌ଛଡ଼ା କରିଦେଇଛି । ଏଣିକି ସାବଧାନ ହୁଅ । ସଂଧ୍ୟାପରେ ବାହାରକୁ ଯିବା ତା'ର ବନ୍ଦ୍ ।

Digitized by srujanika@gmail.com

ନନ୍ଦିତା (ଅଭିମାନରେ) ବାପା ହେଇ ତମେ ତ ତାକୁ ଦିନେ ସ୍ନେହ ଦେଇନା, ସେ ଅଭାବଟା ମୁଁ ପୂରଣ କରିଛି । ନୀରୁ ତମ ଝିଅ । ତମେ ତାକୁ ଏତେ ଛୋଟ ଭାବୁଛ କାହିଁକି ?

ଅଜିତାଭ : ମୋ ଝିଅ ବୋଲି ତ କହୁଛି । ମୋର ସମାଜରେ ଗୋଟେ Status position ଅଛି । Image ଅଛି- ସମ୍ମାନ ଅଛି ।

ନନ୍ଦିତା ତମେ ଏକଥା କହିପାରୁଛ ? ନୀରୁ ଶିକ୍ଷିତା, ଭଲ ମନ୍ଦ ବିଚାର କରିବା ବୟସ ତାର ହେଇଛି । ତା'ଛଡ଼ା ଆଜିକାଲି ଯୁଗରେ ଗୋଟିଏ ଝିଅ, ଗୋଟିଏ ପୁଅଠାରୁ କୌଣସି ଗୁଣରେ କମ୍ ନୁହେଁ । ତମ ମନରେ ନୀରୁ ପ୍ରତି ଏ ଭୁଲ ଧାରଣା କେବେ ବଦଳିବ କେଜାଣି ?

ଅଜିତାଭ : ଝିଅ, ଝିଅ ! ଆଉ ପୁଅ ପୁଅ । କେହି କାହା ସହିତ ସମାନ ହେଇ ପାରିବେନି ନନ୍ଦିତା !

ନନ୍ଦିତା ମୁଁ ତ ଗୋଟିଏ ଝିଅ ! ମୁଁ କ'ଣ ତମ ଆଖିରେ ଏତେ ଛୋଟ ଅଜିତାଭ୍ ?

ଅଜିତାଭ : (ଅପ୍ରସ୍ତୁତ ହେଇ) ତମ କଥା ଅଲଗା, ହେଲେ ସମସ୍ତେ କ'ଣ ସମାନ ହେଇପାରିବେ ?

ନନ୍ଦିତା ତମେ କାହିଁକି ନୀରୁ ପ୍ରତି ଏତେ ନିର୍ଦ୍ଦୟ, ଏତେ ରକ୍ଷଣଶୀଳ ହେଇଉଠୁଛ ? ଝିଅ ଜନ୍ମ ହେବାଟା କ'ଣ ତା'ର ଦୋଷ ? ତା'ଠାରେ ଅଭାବ ଅଛି ? ଦିନେତ ବାପାର ସ୍ନେହ ଆଦର ତାକୁ ଦେଇନା । ଆଉ ଗୁଡ଼ାଏ କୁସଂସ୍କାର ଅନ୍ଧ, ବିଶ୍ୱାସକୁ ମନରେ ଧରି ତାକୁ ଶାସନ କରି ଶିଖିଛ । (କାନ୍ଦିଛି)

ଅଜିତାଭ : Don't be silly ନନ୍ଦିତା । ମୁଁ ତା ଭଲପାଇଁ କହୁଛି । (ନୀରୁ ଆସିଛି)

Digitized by srujanika@gmail.com

ନୀରଜା	କ'ଣ ହେଲା ତମେ କାନ୍ଦୁଛ ଯେ... ।

ନନ୍ଦିତା	ସେ କିଛି ନୁହେଁ । ତୁ ଘର ଭିତରକୁ ଚାଲ...

(ଅନ୍ଧାର)

## ॥ ଅଷ୍ଟମ ଦୃଶ୍ୟ ॥

[ସମୟ- ସଂଧ୍ୟା । ଅଜିତାଭ ଷ୍ଟାଡ଼ିୟମରୁ ନୀରୁର ଖେଳ ଦେଖି ଫେରିଛି । ମାତ୍ର ଦୂରରୁ ଚିହ୍ନିପାରିନି । କିନ୍ତୁ ଗୋଟେ ଝିଅର ଏତେ ସୁନ୍ଦର ଖେଳ ଦେଖି ତା'ର ନିଜ ଝିଅ ପ୍ରତି ଦୁର୍ବଳତା ପ୍ରକାଶ ପାଇଛି ।]

ଅଜିତାଭ୍ : ନନ୍ଦିତା । ନନ୍ଦିତା, ଟିକେ ଶୁଣିଗଲ ।

ନନ୍ଦିତା (ଭିତରୁ ଯାଉଛି । (ଆସି) କ'ଣ କୁହ ?

ଅଜିତାଭ : ନୀରୁ ଘରେ ନାହିଁ କି ?

ନନ୍ଦିତା ନା, ନାହିଁ । ତା'ସାଙ୍ଗ ସନ୍ଧ୍ୟାପାଖକୁ କ'ଣ ଗୋଟେ note ଆଣିବାକୁ ଯାଇଛି । (କଥା ଲୁଚାଇଛନ୍ତି) ହଠାତ୍ ତମର ନୀରୁ ପାଖରେ କି କାମ ପଡ଼ିଲା କି ?

ଅଜିତାଭ : ନାଇଁ, ମାନେ ଏମିତି ଖୋଜୁଥିଲି ।

ନନ୍ଦିତା ନୀରୁଟା ଘରେ ଏକୁଟିଆ ବସି ବସି ବୋର୍ ହଉଛି । କ'ଣ ପାଠ ବୁଝିବାକୁ ଯାଇଛି । ତମେ ବ୍ୟସ୍ତ ହଉଛ କାହିଁକି ?

ଅଜିତାଭ : ଆଜି କାହିଁକି ନୀରୁକୁ ଖୁବ୍ ପାଖରେ ବସେଇ- ଦି'ପଦ କଥା ହେବାକୁ- ବହୁତ ଇଚ୍ଛା ହଉଛି ନନ୍ଦିତା ! (ଭାବପ୍ରବଣ ହେଇ କହିଛନ୍ତି)

ନନ୍ଦିତା (ଆଶ୍ଚର୍ଯ୍ୟରେ) ଏଁ । ନୀରୁ ସହିତ ତମର କଥା ହେବାକୁ ଇଚ୍ଛା ହଉଛି ? ସତ କହୁଛ ? ସତ କହୁଛ ଅଜିତାଭ ? ମୁଁ ତ ବିଶ୍ୱାସ କରିପାରୁନି ।

Digitized by srujanika@gmail.com

ଅଜିତାଭ : ମୁଁ ଜାଣେ ନନ୍ଦିତା ! କେହି ବି ବିଶ୍ୱାସ କରିବେନି ।

ନନ୍ଦିତା ହଠାତ୍ ତମର ଏ ପରିବର୍ତ୍ତନର କାରଣ ବା କ'ଣ- ମୁଁ ତ କିଛି ବୁଝିପାରୁନି । କୁଆଡ଼େ ଯାଇଥିଲ ଶୁଣେ ?

ଅଜିତାଭ : କୁଆଡ଼େ ନାହିଁ । (Pause) ତମେ ତ ଜାଣ ନନ୍ଦିତା କାଲି ଆମ ରାଜ୍ୟରୁ କେତେଜଣ best player ଙ୍କୁ award ଦିଆଯିବ । ସେମାନେ Indian team ପାଇଁ ଖେଳିବେ । ଆସନ୍ତା ମାସରେ world cup series ରେ ମଧ୍ୟ ଏହିଦଳ ଭାଗନେବେ ।

ନନ୍ଦିତା ଏ ତ କିଛି ନୂଆ କଥା ନୁହେଁ ।

ଅଜିତାଭ : ଅଛି ନନ୍ଦିତା, ନୂଆ କଥା ଅଛି । ସମର ଆଉ ଅମରେଶ କହୁଥିଲେ ଆମ ଓଡ଼ିଶାରୁ ଜଣେ ଝିଅ Cricket team ପାଇଁ Select ହେଇଛି ।

ନନ୍ଦିତା ଏଥିରେ ଭାବିବାର କ'ଣ ଅଛି ? ଝିଅମାନେ ତ କାହିଁ କେତେଦୂର ଆଗେଇ ଗଲେଣି ।

ଅଜିତାଭ : ମୁଁ କ'ଣ କହୁଥିଲି ନନ୍ଦିତା (ଟିକେ ରହି) ନୀରୁକୁ ଯଦି Scope ଦିଆଯାଇଥା'ନ୍ତା, ସେ କ'ଣ ଆଜି ଜଣେ ବଡ଼ player ହେଇ ନଥାନ୍ତା । ସେ ଝିଅଟି ଜାଗାରେ ଆଜି ନୀରୁର ନାଁ ରହିପାରିଥାନ୍ତା ।

ନନ୍ଦିତା ଓ ! ଏତେଦିନ ପରେ ନୀରୁର ଖିଆଲ ତମର ଆସିଲା ?

ଅଜିତାଭ : ମୁଁ ଜାଣେ ସବୁ ଭୁଲ୍ ମୋର । ନୀରୁ ପ୍ରତି ଅବିଚାର କରି ମୁଁ ବଡ଼ ଅନ୍ୟାୟ କରିଛି । କେତେ ହତାଦର ମୁଁ ନ କରିଛି ! ଝିଅଟା ବୋଲି କେତେ avoid ନ କରିଛି ।

ନନ୍ଦିତା ସେଇକଥା ମୁଁ ତମକୁ କେତେଥର ବୁଝାଇବାକୁ ଚେଷ୍ଟାକରିଛି ଅଜିତାଭ ! ହେଲେ ତମେ । ଛାଡ଼, ଆଜି ଆଉ ସେସବୁ ଚିନ୍ତା କରି, ଅନୁତାପ କରି କିଛି ଲାଭନାହିଁ ।

ଅଜିତାଭ : ନା, ନନ୍ଦିତା, ନା ! ତମର କିଛି ଭୁଲ ନାହିଁ । ତମେ କିଛି ଅନ୍ୟାୟ କରିନା ! ମୁଁ ଗୋଟାଏ ରୁକ୍ଷ ପିତାର ହୃଦୟ ନେଇ, ତାକୁ ଅନ୍ଧଶାସନ କରିଛି । ହେଲେ, ପିତୃତ୍ୱର କୋମଳତା ଦେଇ ଥରେ ହେଲେ

Digitized by srujanika@gmail.com

ଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏଏ

ନୀରୁକୁ କୋଳକୁ ନେବାକୁ ଇଚ୍ଛା କରିନି । ମୁଁ ଚାହିଥିଲେ ସେ ବି ଆଜି ସମାଜରେ ପ୍ରତିଷ୍ଠିତା ହେଇପାରିଥାନ୍ତା ।

ନନ୍ଦିତା ପଛକଥା ମନେପକେଇ ଆଉ ଲାଭ କ'ଣ ? କେତେ ମିନତି ନ କରିଛି ସେ ତମକୁ Coaching ଦବାପାଇଁ । କିନ୍ତୁ ତମ ଆଖିରେ ପୁଅ ନିଶାଟା ଏତେ ବେଶୀ ଥିଲା ଯେ, ତମେ... ।

ଅଜିତାଭ : ନନ୍ଦିତା ! ତମେ ଠିକ୍ କହିଛ । ପୁଅଝିଅର ପ୍ରଭେଦ– ପୁଅଝିଅର ଅସମାନତା ମତେ ଅନ୍ଧ କରିଦେଇଥିଲା । ମୋ ଠାରୁ ଟିକିଏ ସ୍ନେହ ପାଇଥିଲେ ନୀରୁ ଆଜି ଦଶଟା ପୁଅଠାରୁ ବି ଢେର୍ ଉଚ୍ଚରେ ଥାଆନ୍ତା ।

ନନ୍ଦିତା ଛାଡ଼, ଯାହା ଚାଲିଯାଇଛି, ତାକୁ ଝୁରି ହୋଇ ନିଜକୁ କଷ୍ଟ ଦେବା ଠିକ୍ ନୁହେଁ । ତମେ ଚାଲିଲ, ୬ ଣ ଟିକେ ଖାଇନେଇ ବିଶ୍ରାମ କରିବ । କାଲିପରା ତମର କ'ଣ Programme ଅଛି ?

ଅଜିତାଭ : ମତେ ଆଦୌ ଭୋକନାହିଁ । ମୁଁ ଟିକେ ଏଇଠି ବସିଛି ନୀରୁ ଆସୁ । ପରେ ଖାଇବା ।

ନନ୍ଦିତା ହଉ, ତମ ଇଚ୍ଛା । (ନୀରୁ ଆସିଛି)

ନୀରୁ (ଖୁସିରେ ଡାକି ଡାକି) ମମି ! ମମି ! ଗୋଟେ ବଢ଼ିଆ ଖବର ମମି । (ହଠାତ୍ ଡାଡିଙ୍କୁ ଦେଖି ରହିଯାଇଛି)

ଅଜିତାଭ : କିରେ ! କୁଆଡ଼େ ଥିଲୁ ? ଖାଇବା ପିଇବାରେ ବି ଧ୍ୟାନ ରଖୁନୁ ଯେ

ନୀରୁ ନାଇଁ ଡାଡି... (ଡରି ଡରି କହିଛି)

ନନ୍ଦିତା ଓହୋ, ତମେ ଟିକେ ଚୁପ୍ ହୁଅ– ତମେ ଚାଲିଲ, ଖାଇବ ଚାଲ ।

ଅଜିତାଭ : ମୁଁ ଟିକେ dress change କରି ଆସୁଛି, ଯା, ନୀରୁ ଯା, ତୁ ଖାଇନେବୁ ଯା । (ଚାଲିଗଲେ ଭିତରକୁ)

ନୀରୁ ମମି ! କଥା କ'ଣ ? ଡାଡି କେମିତି ଆଜି ଅଲଗା ଲାଗୁଛନ୍ତି ।

ନନ୍ଦିତା ସେ କିଛି ନୁହେଁ । ଆରେ ହଁ, ଆଜି ତମର Selection ଥିଲା ପରା ?

Digitized by srujanika@gmail.com

ନୀରୁ — ମୁଁ Select ହୋଇଛି ମମି ! ମୁଁ ଆମ ରାଜ୍ୟରୁ India team ପାଇଁ ବଛାଯାଇଛି । କାଲି ଆମକୁ award ଓ ମାନପତ୍ର ମିଳିବ ।

ନନ୍ଦିତା — (ଖୁସିରେ) ଆଜି ଦିନଟାକୁ ମୁଁ କେତେ ଅପେକ୍ଷା କରିଥିଲି । ମୋ ପ୍ରତୀକ୍ଷା ଆଜି ସଫଳ ହୋଇଛି । ଆଜି ମୁଁ ବହୁତ ଖୁସି ନୀରୁ । ବହୁତ ଖୁସି ।

ନୀରୁ — (ଖୁସିରେ) ଓ, ମମି ! ସେ award କିଏ ଦେବେ ଜାଣ ?

ନନ୍ଦିତା — କିଏ ?

ନୀରୁ — ଡାଡି ! କାଲି ଡାଡିଙ୍କ ହାତରୁ ମୁଁ award ନେବି ।

ନନ୍ଦିତା — ସତେ ? ଖୁବ୍ ଭଲହେବ । କାଲି ଡାଡି ଝିଅର ପ୍ରକୃତ ପରିଚୟ ପାଇଯିବେ । କିନ୍ତୁ ମନେରଖ, ଏ କଥା ଯେମିତି Secret ରହେ ।

ନୀରୁ — ମୁଁ କ'ଣ ଏତେ ବୁଦ୍ଧୁ । ସମର Uncle ଆଉ ଅମରେଶ୍ Uncle ମଧ୍ୟ Promise କରିଛନ୍ତି- ଏକଥା କାହାକୁ କହିବେନି । ଡାଡିଙ୍କୁ କାଲି ଗୋଟେ Surprise ଦିଆଯିବ ! ନୁହେଁ ମମି ।

ନନ୍ଦିତା — ହଁରେ ନୀରୁ । ତୋ ଡାଡି ଖୁସିରେ ପାଗଳ ହୋଇଯିବେ ।

ନୀରୁ — ଆଉ ମତେ ଗେହ୍ଲା କରିବେ ନା ? (ନନ୍ଦିତା କାନ୍ଧରେ ଝୁଲିପଡ଼ିଛି)

ନନ୍ଦିତା — ଆରେ ଆରେ ! ଇଏ କ'ଣ କରୁଛୁ ? ଛାଡ଼୍, ମୋ ବେକଟା ଛାଡ଼ନା ! ତୁ କ'ଣ ଆଉ ଛୋଟ ଛୁଆ ହୋଇଛୁ ଯେ, ଡାଡି ତତେ ପପିଦେବେ ?

ନୀରୁ — ଓ ମମି ! ଛୁଆ ନୁହେଁ, ଆଉ କ'ଣ ବୁଢ଼ୀ ? ଡାଡିଙ୍କ ପାଖରେ ମୋର ୧୮ ବର୍ଷର ପାଉଣା ବାକି ଅଛି । ସବୁ ଆଦାୟ କରିନେବି ଯେ ।

(ଭିତରୁ ଅଜିତାଭ- ନନ୍ଦିତା ! କୁଆଡ଼େ ଗଲ ?)

ନନ୍ଦିତା — ଯାଉଛି, ଯାଉଛି । ଚାଲ ନୀରୁ । ଡାଡି ଖାଇବା ପାଇଁ ଅପେକ୍ଷା କରିଛନ୍ତି ।

ନୀରୁ — Oh my God ତମେ ଯାଅ ମମି । ମୁଁ ଟିକେ Fresh ହୋଇ ଆସୁଛି ।

Digitized by srujanika@gmail.com

## ॥ ଶେଷ ଦୃଶ୍ୟ ॥

[Stadium– Announcment ଚାଲିଛି]

ଅମରେଶ : (Announce କରୁଛି) ଦର୍ଶକ ବନ୍ଧୁ । ବର୍ତ୍ତମାନ ମଞ୍ଚ ଉପରକୁ ଆସୁଛନ୍ତି ଜଣେ ନବାଗତ ତଥା ଦକ୍ଷ ମହିଳା Cricket Player ସେ ଆମ ରାଜ୍ୟ ତରଫରୁ ପ୍ରଥମଥର ପାଇଁ India Represent କରୁଛନ୍ତି । ତାଙ୍କର ନାମ ହେଉଛି ମିସ୍ ନୀରଜା ମହାପାତ୍ର । (ତାଳି) ଆପଣମାନେ ଜାଣି ଖୁସି ହେବେ ଯେ, ମିସ୍ ନୀରଜା ହେଉଛନ୍ତି ଆମର ପୂର୍ବତନ Cricket player ତଥା ଆଜିର ମୁଖ୍ୟ ଅତିଥି ଶ୍ରୀଯୁକ୍ତ ଅଜିତାଭ୍ ମହାପାତ୍ର ତଥା ଓଡ଼ିଶାର ବିଶିଷ୍ଟ athlet ଶ୍ରୀମତୀ ନନ୍ଦିତା ଦେବୀଙ୍କର ଏକମାତ୍ର ସୁଯୋଗ୍ୟା କନ୍ୟା ।
(ଦର୍ଶକମାନଙ୍କର କରତାଳି ଓ ହର୍ଷଧ୍ୱନି)
(କୋଳାହଳ ସ୍ୱର ଧୀମେଇ ଆସିଛି)

ଅଜିତାଭ : ମୁଁ ନିଜକୁ ବିଶ୍ୱାସ କରିପାରୁନି ନୀରୁ ! ତୁ କ'ଣ ସତରେ ମୋ ଝିଅ ନୀରଜା ? (ଅବିଶ୍ୱାସ ସ୍ୱରରେ କହିଛନ୍ତି)

ନୀରଜା (ଆନନ୍ଦରେ) ଡାଡି... ।

ଅଜିତାଭ : ମୁଁ ଯେ ଆଜି କେତେ ଖୁସି । ଆଃ... । ତମେ ବୁଝିପାରିବନି ନନ୍ଦିତା ମୋ ସ୍ୱପ୍ନ- ଏମିତି ମୋ ଅଜାଣତରେ ସଫଳ ହେବ- ଏକଥା ମୁଁ କେବେ ଭାବିନଥିଲି ।

ନନ୍ଦିତା ନୀରୁ ତମରି ଝିଅ ଅଜିତାଭ ! 

ଅଜିତାଭ୍ : ସେ କଥା କହି ମତେ ଦୁଃଖ ଦିଅନା ନନ୍ଦିତା ! ନୀରୁର ବାପା ହେବାକୁ ମୋ ଭଳି ଏକ ନିର୍ଦ୍ଦୟ ମଣିଷ ଯୋଗ୍ୟ ନୁହେଁ । ବରଂ ତମେ ତା'ର ସବୁ ! ତମରି ପାଇଁ ସିନା ନୀରୁ ଆଜି ମତେ ଗୌରବ ଦେଇପାରିଛି ।

Digitized by srujanika@gmail.com

ନୀରୁ : ଡାଡି ! ମୁଁ ଆପଣଙ୍କର ଝିଅ ଡାଡି !

ଅଜିତାଭ : ନାଇଁରେ ମାଆ । ତୋ ପ୍ରତି ମୁଁ ଯେଉଁ ଅବିଚାର କରିଛି ସେଥିପାଇଁ ଆଜି ଅନୁତାପରେ ମନଟା ଭାଙ୍ଗିପଡୁଛି ।

ନୀରଜା ଡାଡି ! ତମେ କିଛି ଅବିଚାର କରିନା ଡାଡି ! ବରଂ ତମର ଅବିଚାର ମୋ ପାଇଁ ସୌଭାଗ୍ୟ ଆଣିଦେଇଛି । ତମର ଅବହେଳା ମତେ ବଡ଼ ହେବାର ପ୍ରେରଣା ଦେଇପାରିଛି । ମୁଁ ଯାହା କରିଛି, ସବୁ ତମରି ପାଇଁ ଡାଡି ! ତମ ସ୍ୱପ୍ନକୁ ସଫଳ କରିବାପାଇଁ- ତମ ଆଶୀର୍ବାଦ ବିନା, ମୁଁ କ'ଣ ଏତେ ବାଟ ଆଗେଇ ଯାଇପାରିଥାନ୍ତି ? (ଆସିଛନ୍ତି ସମର ଓ ଅମରେଶ)

ଅମରେଶ : ନୀରୁ ଠିକ୍ କହିଛି ଅଜିତାଭ ! ସମୟ ସବୁକିଛିକୁ କେମିତି ବଦଳାଇ ଦିଏ ଦେଖିଲୁ ତ !

ସମର ଯା ହେଉ ଭାଇ ! ନୀରୁ ଭଳି ଝିଅର ବାପା ହେଇ ତୁ କେଡ଼େ ଭାଗ୍ୟବାନ୍ !

ଅଜିତାଭ : ମତେ ସେ କଥା କହି ଲଜ୍ଜା ଦେଏନା । କିନ୍ତୁ ମତେ ସବୁଠୁ ବେଶି ଆଶ୍ଚର୍ଯ୍ୟ ଲାଗୁଛି ସମର, ନିରୁର Coach କିଏ ?

ଅମରେଶ : ସେ କଥା ଜାଣି ତୋର ଲାଭ କ'ଣ ? ତୁ ଯାହା ଚାହିଁଥିଲୁ ତାହା ତ ପାଇଗଲୁ !

ଅଜିତାଭ : ନାଇଁ ଅମରେଶ୍ ଲାଭ ଅଛି । କାରଣ ନିରୁକୁ ଯିଏ coaching ଦେଇଛି, ସେ କେବେ ସାଧାରଣ coach ହୋଇ ନପାରେ । ଏତେ କମ୍ ଦିନରେ- ଏତେବଡ଼ କରି ଗଢ଼ିବା କ'ଣ ସାମାନ୍ୟ କଥା ?

ସମର ଆଉ କିଏ ନିରୁର coach ହେଇଥିବ ବୋଲି ଭାବୁଛୁ ?

ନନ୍ଦିତା ସମର ଓ ଅମରେଶ୍ ହଉଛନ୍ତି ନୀରୁର coach, ଅଜିତାଭ୍ ।

ଅଜିତାଭ : ଏଁ ? କ'ଣ କହୁଛ ? ତା'ହେଲେ ତମେ ଦୁଇଜଣ... (ଟିକେ ରହି) ହେଲେ, କାହିଁ ? ମତେ ତ ଆଜିଯାଏ କେହି ଏକଥା କେବେ କହିନ ? ଏଇଟା କ'ଣ ଆମର Close friendship ?

Digitized by srujanika@gmail.com

ସମର : ଆଃ ! ତୁ ରାଗୁଛୁ କାହିଁକି କହିଲୁ ? ଯେଉଁଦିନ ନନ୍ଦିତା ଭାଉଜ ଆସି ଆମକୁ କହିଲେ ଯେ, ଝିଅ ବୋଲି ତୁ ନିରୁକୁ avoid କରୁଛୁ, ଆଉ ନିରୁଭଳି କଅଁଳିଆ ଝିଅଟି, ସେ ଆଘାତରେ ଭାଙ୍ଗିପଡୁଛି...

ଅମରେଶ : (କଥା ଛଡ଼େଇ) ଆଉ ସେଇଦିନ ଆମେ discision ନେଇଥିଲୁ ଯେ, ନୀରୁକୁ ଜଣେ ଭଲ Player କରି ଗଢ଼ିବୁ, ତୋ ଆଶାକୁ ସଫଳ କରିବୁ । ତୋ ମନ ଭିତରେ ଥିବା ଅନ୍ଧବିଶ୍ୱାସର ଭୂତଟାକୁ ବାହାର କରିଦେବୁ ।

ନନ୍ଦିତା ମୋ ଅନୁରୋଧରେ ସେମାନେ ତମ ଆଗରେ ସବୁକଥା Secret ରଖିଥିଲେ ଅଜିତାଭ୍ ।

ନୀରଜା ଡାଡି ! ତମକୁ ଗୋଟେ ବଡ଼ Surprise ଦେବା ଆମର ଇଚ୍ଛା ଥିଲା, ତମେ କ'ଣ ଖୁସି ହେଇନ ଡାଡି ?

ଅଜିତାଭ : ଓଃ ନୀରୁ ! my child, (ମୁଣ୍ଡ ଆଉଁସି ଦେଇଛନ୍ତି) ସତରେ ଅମରେଶ, ସତରେ ସମର ! ତମେମାନେ ଖାଲି ମୋର ବନ୍ଧୁ ନୁହଁ, ମୋର ଦିଗ୍‌ଦର୍ଶକ ମଧ୍ୟ ।

ସମର ନନ୍ଦିତା ଭାଉଜ ଏଥିପାଇଁ କମ୍ ତ୍ୟାଗ କରିନାହାନ୍ତି ମ ! Daily ନୀରୁର ଫେରିବା ବିଳମ୍ୱ ଯୋଗୁ ତୁ ତାଙ୍କୁ କୈଫିୟତ୍ ମାଗୁଥିଲୁ ନା ! ତୋର ସବୁ ବିରକ୍ତିକୁ ନୀରବରେ ସହିନେଇ, ନୀରୁର ଉଜ୍ୱଳ ଭବିଷ୍ୟତ ପାଇଁ ସେ ବି ସଂକଳ୍ପ କରିଥିଲେ ।

ଅଜିତାଭ : Really ! ତମମାନଙ୍କର ଉତ୍ସାହ- ତମମାନଙ୍କର ପ୍ରେରଣା ତମମାନଙ୍କର ଦାନ- ମୋ ଜୀବନରେ ପୂର୍ଣ୍ଣତା ଆଣି ଦେଇଛି । ମୁଁ ଆଜି ବୁଝିପାରୁଛି- ପୁଅଝିଅ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଛୋଟ ଶିଶୁଟିଏ ମାଟି କଣ୍ଢେଇଟିଏ ସହ ସମାନ । ମାଟି କଣ୍ଢେଇକୁ କାରିଗର ନିଜ ଇଚ୍ଛାନୁସାରେ ରୂପ ଦେଇ ଜୀବନ୍ତ କରି ଗଢ଼ି ତୋଳେ ।

Digitized by srujanika@gmail.com

ଛୋଟ ପିଲାଟିଏ, ସେ ପୁଅ ହେଉ କି ଝିଅ ହେଉ- ତାକୁ ଯଦି ପିଲାଟି ଦିନରୁ ମନ ମୁତାବକ ଗଢ଼ାଯାଏ, ତେବେ ସେ ନିଶ୍ଚୟ ଦିନେ ଫୁଲଟିଏ ଭଳି ମହକି ଉଠିବ ।

ଅମରେଶ : ଓହୋ ଅଜିତାଭ ! ଏତେବଡ଼ ଖୁସିଟାକୁ ଖୁବ୍ ଜାକଜମକରେ celebrate ନ କଲେ, ଆମର ଗୁରୁଦକ୍ଷିଣାଟା କେମିତି ମିଳିବ କହିଲୁ ?

ନନ୍ଦିତା ସତରେ ଅଜିତାଭ ! ୧୮ ବର୍ଷ ହେଇଗଲା । ନୀରୁ ପାଇଁ ଆମ ଘରେ ଥରଟିଏ ବି ଉତ୍ସବ କରାଯାଇନି ।

ଅଜିତାଭ : ଆଜି ପୃଥିବୀର ସବୁ ଖୁସିକୁ ଏକାଠି କରି, ନୀରୁ ହାତରେ ଅଜାଡ଼ି ଦେବାକୁ ମୁଁ ଚାହେଁ ନନ୍ଦିତା । we must celebrate this great success !

ନୀରୁ Oh my great Daddy !!

(Funtion ର Effect । ସ୍ୱର ଧୀରେ ଧୀରେ ଲିଭିଯାଉଛି)

(ଅନ୍ଧାର)



(ଆକାଶବାଣୀ, କଟକ କେନ୍ଦ୍ରରୁ ପ୍ରସାରିତ)

Digitized by srujanika@gmail.com



# ହସ୍ତାକ୍ଷର

Digitized by srujanika@gmail.com




ସୀମା

ମଦନ

ଶ୍ରୀକାନ୍ତ

ସୁଧାକର

ଗିରୀଶ

ମାଳତୀ

Digitized by srujanika@gmail.com

ଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓଓ

## ॥ ପ୍ରଥମ ଦୃଶ୍ୟ ॥

[ସୀମାନ ଭଡ଼ାଘର]

ସୀମା — କାହାକୁ ଖୋଜୁଛନ୍ତି ?

ମଦନ — ଆପଣ କ'ଣ ସୀମା ମହାପାତ୍ର ?

ସୀମା — ହଁ, କିନ୍ତୁ ଆପଣ ?

ମଦନ — ମୁଁ ଆପଣଙ୍କୁ ହିଁ ଖୋଜୁଛି । ମୁଁ ହେଉଛି ଶ୍ରୀକାନ୍ତର ବାପା ।

ସୀମା — ଓ, ଆପଣ ! ନମସ୍କାର । ବସନ୍ତୁ ମୁଁ ଟିକେ ଚା ଆଣେ ।

ମଦନ — ନାଁ, ଥାଉ ! ତମେ ବସ । ତମ ପାଖରେ ମୋର କାମ ଅଛି ।

ସୀମା — ମୋ ପାଖରେ କି କାମ ?

ମଦନ — କଥାଟାକୁ ମୁଁ ସିଧାସଳଖ କହୁଛି । ତମକୁ ମୁଁ ବୋହୂ କରି ନେବାକୁ ଚାହେଁ ।

ସୀମା — କିନ୍ତୁ ମୁଁ...

ମଦନ — ଶ୍ରୀକାନ୍ତ ମତେ ତୁମ ବିଷୟରେ ସବୁ କହିଛି । ମୁଁ ଜାଣେ ମାଆ, ଶ୍ରୀକାନ୍ତ ତୁମକୁ ବହୁତ ଭଲପାଏ । ତା' ମନରେ ଦୁଃଖ ଦେବା ମୋର ଇଚ୍ଛା ନୁହେଁ ।

ସୀମା — କିନ୍ତୁ ଆପଣ ମୋ ବିଷୟରେ କିଛି ନ ଜାଣି ଏତେ ବଡ଼ decision ନେଇଗଲେ ? ମୋର ତ ପୁଣି ମତାମତ ଅଛି ।

ମଦନ — ତମେ ଠିକ୍ କହିଛ ମାଆ । ତମକୁ ମୁଁ ବାଧ କରୁନି । କେବଳ ତୁମ ମନକଥା ଜାଣିବାକୁ ଚାହୁଁଛି । ତୁମ ବିଷୟରେ ଅଧିକ କିଛି ଜାଣିବାର ଆବଶ୍ୟକତା ମଧ ନାହିଁ । କାରଣ ଶ୍ରୀକାନ୍ତ ମୋର ହୀରା । ମୁଁ ଜାଣେ, ତାର choice କେବେ ଖରାପ ହୋଇ ନ ପାରେ ।

ସୀମା — ମୁଁ କିନ୍ତୁ ଏଥିରେ ଏକମତ ନୁହେଁ ।

Digitized by srujanika@gmail.com




ସୀମା

ମଦନ

ଶ୍ରୀକାନ୍ତ

ସୁଧାକର

ଗିରୀଶ

ମାଳତୀ

Digitized by srujanika@gmail.com

# ॥ ପ୍ରଥମ ଦୃଶ୍ୟ ॥

[ସୀମାର ଭଡ଼ାଘର]

ସୀମା କାହାକୁ ଖୋଜୁଛନ୍ତି ?

ମଦନ ଆପଣ କ'ଣ ସୀମା ମହାପାତ୍ର ?

ସୀମା ହଁ, କିନ୍ତୁ ଆପଣ ?

ମଦନ ମୁଁ ଆପଣଙ୍କୁ ହିଁ ଖୋଜୁଛି । ମୁଁ ହେଉଛି ଶ୍ରୀକାନ୍ତର ବାପା ।

ସୀମା ଓ, ଆପଣ ! ନମସ୍କାର । ବସନ୍ତୁ ମୁଁ ଟିକେ ଚା ଆଣେ ।

ମଦନ ନାଁ, ଥାଉ ! ତମେ ବସ । ତମ ପାଖରେ ମୋର କାମ ଅଛି ।

ସୀମା ମୋ ପାଖରେ କି କାମ ?

ମଦନ କଥାଟାକୁ ମୁଁ ସିଧାସଳଖ କହୁଛି । ତମକୁ ମୁଁ ବୋହୂ କରି ନେବାକୁ ଚାହେଁ ।

ସୀମା କିନ୍ତୁ ମୁଁ...

ମଦନ ଶ୍ରୀକାନ୍ତ ମତେ ତୁମ ବିଷୟରେ ସବୁ କହିଛି । ମୁଁ ଜାଣେ ମାଆ, ଶ୍ରୀକାନ୍ତ ତୁମକୁ ବହୁତ ଭଲପାଏ । ତା' ମନରେ ଦୁଃଖ ଦେବା ମୋର ଇଚ୍ଛା ନୁହେଁ ।

ସୀମା କିନ୍ତୁ ଆପଣ ମୋ ବିଷୟରେ କିଛି ନ ଜାଣି ଏତେ ବଡ଼ decision ନେଇଗଲେ ? ମୋର ତ ପୁଣି ମତାମତ ଅଛି ।

ମଦନ ତମେ ଠିକ୍ କହିଛ ମାଆ । ତମକୁ ମୁଁ ବାଧ କରୁନି । କେବଳ ତୁମ ମନକଥା ଜାଣିବାକୁ ଚାହୁଁଛି । ତୁମ ବିଷୟରେ ଅଧିକ କିଛି ଜାଣିବାର ଆବଶ୍ୟକତା ମଧ ନାହିଁ । କାରଣ ଶ୍ରୀକାନ୍ତ ମୋର ହୀରା । ମୁଁ ଜାଣେ, ତାର choice କେବେ ଖରାପ ହୋଇ ନ ପାରେ ।

ସୀମା ମୁଁ କିନ୍ତୁ ଏଥିରେ ଏକମତ ନୁହେଁ ।

Digitized by srujanika@gmail.com

| | |
|---|---|
| ମଦନ | କାହିଁକି ମାଆ ? ଶ୍ରୀକାନ୍ତ କ'ଣ ତୁମର ପସନ୍ଦ ନୁହେଁ । |
| ସୀମା | ନାଁ, ସେ କଥା ନୁହେଁ ଯେ । ମୁଁ କିନ୍ତୁ ଆଦୌ ବିବାହ କରିବାକୁ ଚାହେଁନା । |
| ମଦନ | କାହିଁକି ମାଆ ? |
| ସୀମା | ମୋର ପାରିବାରିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ବୁଢ଼ା ବାପାମାଆ, ଦୁଇ ଭଉଣୀ ଓ ଗୋଟିଏ ଭାଇ । ସମସ୍ତେ ମୋ ଉପରେ ନିର୍ଭର କରୁଛନ୍ତି । ସେମାନଙ୍କୁ ମଣିଷ କରିବା ମୋର ଦାୟିତ୍ୱ, ମୋର ପ୍ରଧାନ କର୍ତ୍ତବ୍ୟ । |
| ମଦନ | ଝିଅ ମଧ୍ୟ ପୁଅଠାରୁ କୌଣସି ଗୁଣରେ କମ୍ ନୁହେଁ ସୀମା ! ପରିବାର ପ୍ରତି ତାର ମଧ୍ୟ ସମାନ କର୍ତ୍ତବ୍ୟ ଅଛି । କିନ୍ତୁ ବିବାହ କଲେ ଯେ, ତୁମେ ଏ ସବୁ କରିପାରିବେନି । ସେ କଥା ଭାବୁଛ କାହିଁକି ? |
| ସୀମା | (ହସିଛି) ସମସ୍ତେ ଏମିତି ଆକାଶଛୁଆଁ କଥା କୁହନ୍ତି । ବଦାନ୍ୟତା ଦେଖାନ୍ତି । କିନ୍ତୁ ଶାଶୁଘର ବୋହୂ ହେଲାପରେ ବୋହୂର ସାମାନ୍ୟତମ ସ୍ୱାଧୀନତାଟିକକ ମଧ୍ୟ ରହେନା । ସେଇ ଘରର ଚାରିକାନ୍ଥ ଭିତରେ କୁମାରୀ ମନର ସବୁ ଆଶା ମଉଳିଯାଏ । ସବୁ ସ୍ୱପ୍ନ ହଜିଯାଏ । ବାପଘରର ଛାଇ ସୁଦ୍ଧା ତାକୁ ସ୍ପର୍ଶ କରିପାରେନା । ମନତଳର ନିଭୃତ ଭାଷା ପଥର ପାଲଟିଯାଏ । କିଏ ବୁଝେ ଗୋଟିଏ ଝିଅର ମନ ? ଗୋଟିଏ ବୋହୂର ମନକୁ ? |
| ମଦନ | ସୀମା ! ତୁମେ ମଣିଷ ଚିହ୍ନିବାରେ ଭୁଲ୍ କରିଛ । ମତେ ବିଶ୍ୱାସକର ସୀମା । ତୁମେ ମୋ ଘରର ବୋହୂ ନୁହେଁ, ଝିଅ ହୋଇ ରହିବ । ଗୋଟିଏ ବାପାକୁ ଛାଡ଼ି ଆଉ ଗୋଟିଏ ବାପା ପାଇବ । |
| ସୀମା | ମତେ କ୍ଷମା କରନ୍ତୁ । ମୁଁ ନିରୁପାୟ । ମୋ ବାପା ସମ୍ବଳହୀନ । ଆପଣଙ୍କ ଘରେ ବନ୍ଧୁତା କରିବାର ଶକ୍ତି ଆମର ନାହିଁ । ଆପଣଙ୍କ ଉଚ୍ଚଶିକ୍ଷିତ ପୁଅକୁ ମୋଟା ଅଙ୍କର ଯୌତୁକ ଦେବାଭଳି କ୍ଷମତା ଆମର ନାହିଁ । |

Digitized by srujanika@gmail.com

ମଦନ	ମୋ ପୁଅ କ'ଣ ଅଯୋଗ୍ୟ ? ଧନ ମୋର ଦରକାର ନାହିଁ, ତେବେ ମୋ ଘରେ ଗୋଟିଏ ଜିନିଷର ଅଭାବ...

ସୀମା	ମୁଁ ଆପଣଙ୍କର କୌଣସି ଅଭାବ ପୂର୍ଣ୍ଣ କରିପାରିବି ନାହିଁ । ନିଜ ସୁଖ ପାଇଁ ମୁଁ ନିଜ ପରିବାରକୁ ଆହୁତି ଦେଇପାରିବି ନାହିଁ ଆପଣଙ୍କୁ ମଧ୍ୟ ସୁନ୍ଦରୀ ଶିକ୍ଷିତା ଝିଅର ଅଭାବ ହେବନି ।

ମଦନ	ତୁମେ ସତ କହିଛ ମାଆ । ଏମିତି କେତେ ପ୍ରସ୍ତାବ ଆସି ଯୌତୁକର ପ୍ରଲୋଭନ ପାଇଛି । ଧନ ପ୍ରତି ମୋର ଆସକ୍ତି ନାହିଁ । ଏତେ ବଡ଼ ଘର, ସବୁ ଶୂନ୍ୟ... ସବୁ ଫାଙ୍କା । ସେଇ ଶୂନ୍ୟତାକୁ ଭରିଦେବା ଭଳି ମଣିଷଟିଏ ଦରକାର । ଆଉ ତୁମେ ହିଁ ତାହା କରିପାରିବ ମାଆ ।

ସୀମା	ମଉସା !

ମଦନ	ହଁ ସୀମା, ଶ୍ରୀକାନ୍ତ ମୋ ମନଲାଖି ମଣିଷଟିଏ ବାଛିପାରିଛି ।

ସୀମା	ମୁଁ କିନ୍ତୁ ନିରୁପାୟ ।

ମଦନ	ସେ କଥା କୁହନା ମାଆ । ଶ୍ରୀକାନ୍ତ ପିଲାଦିନରୁ ମାଆ ମମତା କ'ଣ ଜାଣିନି । ସେଥିପାଇଁ ସେ ଯାହା ଚାହିଁଛି, ମୁଁ ତାକୁ ଦେଇଛି । କିନ୍ତୁ ମାଆର ମମତା କ'ଣ ବାପା ଦେଇପାରେ ନାରୀ ହିଁ ପୁରୁଷକୁ ସ୍ନେହ- ପ୍ରେମ- ମମତା ସବୁ ଦେଇପାରେ । ତୁମେ ମନା କଲେ ଶ୍ରୀକାନ୍ତ ସାରାଜୀବନ ଏକା ରହିଯିବ ମାଆ ।

ସୀମା	ହେଲେ ମୁଁ କ'ଣ କରିପାରିବି ?

ମଦନ	ମତେ ଏତେ ହୃଦୟହୀନ ଭାବନା ସୀମା । ତୁମ ଭଳି ମୋର ମଧ୍ୟ ଲତା ବୋଲି ଝିଅଟିଏ ଥିଲା । ବହୁତ ବଡ଼ଘରେ ତାର ବିବାହ ସ୍ଥିର କରିଥିଲି ହେଲେ...

ସୀମା	କ'ଣ ହେଲା ?

ମଦନ	ସାମାନ୍ୟ ଏକ ଭୁଲ୍ ବୁଝାମଣା ଯୋଗୁ ସେ ଆତ୍ମହତ୍ୟା କରିଦେଲା ।

Digitized by srujanika@gmail.com

| | |
|---|---|
| ସୀମା | କିନ୍ତୁ କାହିଁକି ? |
| ମଦନ | ହଁ ସୀମା, ମୁଁ ତା ପାଇଁ କିଛି କରିପାରିଲିନି । ମାତୃହୀନା ଝିଅର ଦୁଃଖ ମୁଁ ବୁଝିପାରିଲିନି । ସେଇ ଦୁଃଖର ଆଘାତ ମତେ ଯନ୍ତଣା ଦେଉଛି । |
| ସୀମା | କ'ଣ ହେଇଥିଲା ଲତାର ? |
| ମଦନ | ସେ ଜଣକୁ ଭଲପାଉଥିଲା । ମୁଁ ତାର ମତାମତ ନ ନେଇ ଅନ୍ୟ ଜାଗାରେ ବିବାହ ସ୍ଥିର କରିଦେଲି । ବାପା ଆଗରେ ମନ ଖୋଲି କିଛି କହିଲାନି ଲତା । ଶେଷରେ... |
| ସୀମା | ମୁଁ ଆପଣଙ୍କ ମନରେ ଦୁଃଖ ଦେଲି । |
| ମଦନ | ଛାଡ଼ ମାଆ, ଆତ୍ମବିଶ୍ୱାସୀ କେବେ ହାରେ ନାହିଁ । କ୍ଲାନ୍ତ ହୁଏ ନାହିଁ । ନିରାଶ ହୁଏ ନାହିଁ । ତାର ମୃତ୍ୟୁ ମଧ ନାହିଁ । ଆତ୍ମବିଶ୍ୱାସ ନେଇ ମଣିଷ ଭବିଷ୍ୟତକୁ ସୁଦୃଢ଼ କରେ । ବିଶ୍ୱାସ ନେଇ ସଂସାର ଗଢ଼େ । ଆଶା ନେଇ ବଞ୍ଚେ । ଝିଅ ବଦଳରେ ଝିଅଟିଏ ପାଇବାର ଆଶାରେ ମୁଁ ବଞ୍ଚିଛି । ଯେଉଁ ଅଭାବ ନିଜ ଜୀବନରେ ଉପଲବ୍ଧି କରିଛି, ସେ ଅଭାବ ଆଗାମୀ ବଂଶଧରମାନେ ଅନୁଭବ ନ କରନ୍ତୁ, ଏହା ମୋର ଏକାନ୍ତ ଇଚ୍ଛା । |
| ସୀମା | ଏ ସମାଜରେ କେତେଜଣ ଲୋକ ଏ କଥା ବୁଝନ୍ତି ? ସ୍ନେହ-ପ୍ରେମ- ମମତା ସେମାନଙ୍କ ନିକଟରେ ଗୋଟିଏ ଗୋଟିଏ ଆପେକ୍ଷିକ ଶବ୍ଦ ମାତ୍ର । |
| ମଦନ | ନା, ସୀମା । ମଣିଷ ଠକିଲେ ଶିଖେ । ଭୁଲ୍ ହିଁ ଠିକ୍‌ର ପଥ ପ୍ରଦର୍ଶକ । ଦୁଃଖ, ଅଭାବ, ଯନ୍ତଣାର କଷଟି ପଥରରେ କଷି ହୋଇ ମଣିଷ ଜୀବନର ସତ୍ୟକୁ ଖୋଜିପାଏ, ବାସ୍ତବତାର ସନ୍ଧାନ ପାଏ । ସେଇ ହିଁ ଅନ୍ୟର ମନକୁ ବୁଝେ । |
| ସୀମା | ମୁଁ ସବୁ ବୁଝୁଛି । କିନ୍ତୁ ଆପଣ ବୁଝିପାରିବେନି । ବିବାହ ମୋ ପାଇଁ ଏତେ ମୂଲ୍ୟବାନ୍ ନୁହେଁ । |

Digitized by srujanika@gmail.com

ମଦନ : ସୀମା ! ମଣିଷ ଜୀବନର ନୈତିକ ବିକାଶ ଗୃହସ୍ଥ ଜୀବନରେ ହିଁ ଘଟେ । ତୁମ ମନର କଥା ମୁଁ ଜାଣେନା; କିନ୍ତୁ ତୁମ ପାଇଁ ଯାହା ମୂଲ୍ୟହୀନ, ଅନ୍ୟପାଇଁ ତାହା ସବୁଠୁ ମୂଲ୍ୟବାନ୍ ହୋଇପାରେ । ଅନ୍ୟ ପାଇଁ ଚିନ୍ତା କରିବା କ'ଣ ମଣିଷର ଧର୍ମ ନୁହେଁ ? ନାରୀର ଭୂମିକା ପୁରୁଷ ଜୀବନରେ କେତେ ବଡ଼ ସେ କଥା ତୁମେ କ'ଣ ଜାଣନା ମାଆ ?

ସୀମା ଆଜିର ପୁରୁଷ ସମାଜ ନିକଟରେ ନାରୀର ମନ ନୁହେଁ ଧନ ହିଁ ବଡ଼ । ଯେଉଁ ପୁରୁଷ ନାରୀତ୍ୱକୁ ସମ୍ମାନ ଦେଇ ଜାଣେନା, ସେଇ ପୁରୁଷ ସମାଜରେ ଜଣକର ସହଧର୍ମିଣୀ ହେବାକୁ ମୁଁ ପସନ୍ଦ କରେନା ।

ମଦନ ସୀମା ! ସାରା ସମାଜ ପ୍ରତି ତୁମର ଏ ଆକ୍ଷେପ, ଠିକ୍ ନୁହେଁ । ତୁମକୁ ଯଦି କେହି ଝିଅର ଅଧିକାର ଦିଏ, ପତ୍ନୀର ସମ୍ମାନ ଦିଏ, ତେବେ କ'ଣ ତୁମେ ତାକୁ ଗ୍ରହଣ କରିବନି ?

ସୀମା ମଉସା ! ମତେ ଥରେ ଭାବିବାକୁ ସମୟ ଦିଅନ୍ତୁ ।

ମଦନ ସୀମା ! ତୁମକୁ ମୁଁ ବାଧ୍ୟ କରୁନି । ତୁମେ ଶିକ୍ଷିତା, ଆତ୍ମନିର୍ଭରଶୀଳା । ମୋ କଥା ଥରେ ଚିନ୍ତା କରି ଦେଖ ।

ସୀମା ହେଲେ, ମୋ ଉତ୍ତର ଯଦି ଆପଣଙ୍କୁ ଖୁସି ନ କରେ !

ମଦନ ତାହା ଶ୍ରୀକାନ୍ତର ଦୁର୍ଭାଗ୍ୟ ବୋଲି ଧରିନେବି ! ମୁଁ ଏଡ଼େ ଅମଣିଷ ନୁହେଁ । ଅବିବେକୀ ନୁହେଁ ଯେ ଜୋର୍ କରି ତୁମ ଉପରେ ନିଜର ବୋଝ ଲଦିଦେବି । ତଥାପି ମୋର ବିଶ୍ୱାସ । ତୁମେ ମତେ ନିରାଶ କରିପାର; କିନ୍ତୁ ଶ୍ରୀକାନ୍ତକୁ ଭଲପାଇବାକୁ କେବେ ଉପେକ୍ଷା କରିପାରିବ ନାହିଁ ।

ସୀମା ମଉସା !

ମଦନ ମୁଁ ତେବେ ଆସୁଛି ମାଆ ।

Digitized by srujanika@gmail.com

## ॥ ଦ୍ୱିତୀୟ ଦୃଶ୍ୟ ॥

ଶ୍ରୀକାନ୍ତ ମୋ ପ୍ରଶ୍ନର ଉତ୍ତର ଦେଲନି ସୀମା ।

ସୀମା କି ଉତ୍ତର ଦେବି ମୁଁ ଭାବିପାରୁନି ଶ୍ରୀକାନ୍ତ । ତୁମ ଆଗରେ ମନଟାକୁ ଖୋଲି ଦେଇପାରୁନି ।

ଶ୍ରୀକାନ୍ତ ମୁଁ ବୁଝିପାରୁନି ସୀମା ! ଯେତେଥର ମୁଁ ତମକୁ ବିବାହ ବିଷୟରେ କହିଛି, ତମେ ଏଡ଼ାଇ ଯାଇଛ । ମୁଁ କ'ଣ ତମର ଅନୁପଯୁକ୍ତ ଅଯୋଗ୍ୟ ?

ସୀମା Please ଶ୍ରୀକାନ୍ତ । ଏମିତି କହି ମତେ ଛୋଟ କରିଦିଅନା ମୁଁ ଜାଣେ ତମେ ମତେ ବହୁତ ଭଲପାଅ; କିନ୍ତୁ ଭଲପାଇବା ଓ ବିବାହ ଦୁଇଟି ଭିନ୍ନ ଶବ୍ଦ । ବିବାହର ଅର୍ଥ ମୋ ପାଇଁ କେବଳ ଦେହର ମିଳନ ନୁହେଁ, ଦୁଇଟି ମନର ମିଳନ । ଦୁଇଟି ଆତ୍ମାର ମିଳନ ହିଁ ପ୍ରକୃତ ବିବାହ ।

ଶ୍ରୀକାନ୍ତ ମୁଁ ଜାଣେ ସୀମା । ତମେ କ'ଣ ଭାବୁଛ, ମୁଁ କେବଳ ତମ ଦେହକୁ ଚାହେଁ ?

ସୀମା ତମେ କ'ଣ ଚାହଁ ନ ଚାହଁ ସେ କଥା ମୁଁ ଜାଣେନା ଶ୍ରୀକାନ୍ତ; କିନ୍ତୁ ତମ ପରିବାର ତମ ସମାଜ କ'ଣ ଠିକ୍ ଏଇଆ ଚାହେଁ ? ତମ ଚାହୁଁଥିବ ଯୌତୁକ ଧନରତ୍ନ । ଧନରତ୍ନ ହିଁ ସମାଜ ଆଖିରେ ତମ ଶିକ୍ଷାର ମାପକାଠି; କିନ୍ତୁ ମୋ ବାପା ସମ୍ବଳହୀନ ।

ଶ୍ରୀକାନ୍ତ ମୁଁ ବୁଝିପାରୁନି ସୀମା । ତମେ ଏସବୁ କ'ଣ କହିଯାଉଛ ?

ସୀମା ତମେ ବୁଝିପାରିବନି ଶ୍ରୀକାନ୍ତ । ଏ ସମାଜକୁ ମୁଁ ଭଲଭାବେ ଚିହ୍ନେ । ରୀତିନୀତି ନିୟମକାନୁନ୍ ଏ ସମାଜର ବାହ୍ୟରୂପକୁ ବଦଳାଇ ଦେଇପାରୁଛି । କିନ୍ତୁ ତା ଭିତର ଏବେବି ଅନ୍ଧାର, ଏବେ ବି ସଂକୀର୍ଣ୍ଣ ।

ଶ୍ରୀକାନ୍ତ ସୀମା !

Digitized by srujanika@gmail.com

ସୀମା : ଆଜିର ଶିକ୍ଷିତ ଯୁବକ ନିକଟରେ ଗୋଟିଏ ଯୁବତୀର ମନର ମୂଲ୍ୟ କିଛି ନାହିଁ । ଯୌତୁକ ହିଁ ତା'ର ଶିକ୍ଷା, ସଭ୍ୟତା ଓ ଯୋଗ୍ୟତାର ମାପକାଠି । ସମାଜର ଦ୍ୱାହି ଦେଇ କେତେ ବାପାମାଆ କେତେ ନିରୀହା ଝିଅଙ୍କର ଜୀବନ ନେଇ ଖେଳ ଖେଳୁଛନ୍ତି । କିଏ ନିଆଁରେ ଜଳୁଛି, କିଏ ନଈ ପୋଖରୀର ପାଣିକୁ ଆଦରି ନେଉଛି । କାହାର ଜୀବନ ଆରମ୍ଭ ହେବା ଆଗରୁ ମଉଳି ଯାଉଛି । ସେ କଥା ଭାବିବାକୁ କାହାର ସମୟ ନାହିଁ, ଇଚ୍ଛା ନାହିଁ । ଆଖି ଥାଇ ଆମେ ଅନ୍ଧ । ଶିକ୍ଷିତ ହୋଇ ଆମେ ବିବେକହୀନ । ଏ ସମାଜକୁ ମୁଁ ଘୃଣା କରେ ଶ୍ରୀକାନ୍ତ ।

ଶ୍ରୀକାନ୍ତ ମୁଁ ଜାଣେନା ସୀମା । ଏ ସମାଜ ପ୍ରତି ତମର ଏତେ ତିକ୍ତତା କାହିଁକି ? ଯୁବ ସମାଜ ପ୍ରତି ଏତେ ନିରାସକ୍ତ ଭାବ କାହିଁକି ?

ସୀମା ଶ୍ରୀକାନ୍ତ । ମୋ ମନ ଫୁଲଭଳି କୋମଳ ଥିଲା । ସରଳ ଥିଲା ହେଲେ ମୋ ଅତୀତ... । ତମ ଭଳି ଜଣେ ଶିକ୍ଷିତ ପରିବାରର ଧକ୍କା ମତେ ଆଜି ଏତେ ବାଟ ଟାଣିଆଣିଛି । ମୁଁ ସେତେବେଳେ ମାଟ୍ରିକ୍ ପାଶ୍ କରି ଘରେ ଥାଏ । ମୋର ବିବାହ ପାଖ ଗାଁ ହରିପୁର ଚୌଧୁରୀ ବାବୁଙ୍କ ଘରେ ସ୍ଥିର ହୋଇଥାଏ । (Flash back)

(ସୁଧାକର ବାବୁଙ୍କ ଘର । ବାହାଘରର ଭଦ୍ରଲୋକ ଗିରୀଶବାବୁ ପ୍ରବେଶ)

ସୁଧାକର : ଆରେ ଗିରୀଶ ବାବୁ ଯେ । ନମସ୍କାର ଆସନ୍ତୁ ।

ଗିରୀଶ ତମ ଭାଗ୍ୟ ବଡ଼ ଟାଣ ସୁଧାକର ।

ସୁଧାକର : କେଉଁ କଥା କହୁଛନ୍ତି ? ମୋ ଅବସ୍ଥା ତ ଦେଖୁଛନ୍ତି । ଝିଅ ବାହାଘର ଲାଗି ବର ଖୋଜି ହତାଶ ହୋଇଗଲି ।

ଗିରୀଶ ସେଇକଥା ତ ମୁଁ କହୁଛି । ଚୌଧୁରୀ ବାବୁ ତମ ଘରେ ବନ୍ଧୁ ବାନ୍ଧିବାକୁ ଏକଦମ୍ ରାଜି ।

ସୁଧାକର : କ'ଣ କହୁଛନ୍ତି ଆପଣ ? ମୁଁ ବିଶ୍ୱାସ କରିପାରୁନି ।

Digitized by srujanika@gmail.com

ଗିରୀଶ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ସୁଧାକରବାବୁ; କିନ୍ତୁ କଥାଟା ସଂପୂର୍ଣ୍ଣ ସତ୍ୟ । ମୁଁ ପରା ସେଇ ଖବର ଦେବାପାଇଁ ଆସିଛି ।

ସୁଧାକର : ସତ କହୁଛନ୍ତି ଗିରୀଶବାବୁ । ବାମନ ହେଇ ଚନ୍ଦ୍ର ଧରିବାର ସ୍ୱପ୍ନ ମୁଁ ଦେଖୁନିତ ?

ଗିରୀଶ ଆରେ ଭାଇ ପୁରୁଣାକାଳିଆ କଥାଗୁଡ଼ାକ କାହିଁକି କହୁଛ କହିଲ ? କଥାରେ ନାଇଁ– ପ୍ରଜାପତି ସମ୍ବନ୍ଧ, ପିତାମାତା ଅନ୍ଧ– ବୁଝିଲ ? ଚୌଧୁରୀ ବାବୁ ଆଉ ତାଙ୍କ ପୁଅ ଅମିୟ ତମ ଝିଅ ସୀମାର ରୂପଗୁଣ ଦେଖି ଭାରି ଖୁସି । ତମ ଝିଅ ଛଡ଼ା ଅନ୍ୟ କାହାକୁ ବୋହୂ କରିବେନି ବୋଲି, ପରା କହିଲେ ।

ସୁଧାକର : ତାଙ୍କୁ ଖୁସି କଲାଭଳି ମୁଁ କ'ଣ ଦେଇପାରିବି ?

ଗିରୀଶ ଓହୋ ! ତମେ ବ୍ୟସ୍ତ କାହିଁକି ହେଉଛ ? ତାଙ୍କର କ'ଣ ଅଭାବ ଅଛି ? ଦାଣ୍ଡ ସୁନ୍ଦର ଦେଖି ଯାହାଦେବ, ସେଥିରେ ତାଙ୍କର କିଛି କହିବାର ନାହିଁ । ଏତେ ବଡ଼ ଘର ପୁଣି ଇଂଜିନିୟର ଜ୍ୱାଇଁ ପାଇବଟି ?

ସୁଧାକର : ଗିରୀଶବାବୁ । ସତେ କ'ଣ ମୋ ଝିଅ ଏଡ଼େ ଭାଗ୍ୟବତୀ ?

ଗିରୀଶ ସେ କଥା ନିଜେ ବୁଝିପାରିବନି କି ? ଚୌଧୁରୀବାବୁ ଖବର ଦେଇଛନ୍ତି । ଏଇ ଶେଷ ଲଗ୍ନରେ ବାହାଘରଟା ସାରିଦେବେ ।

ସୁଧାକର : କିନ୍ତୁ ଶେଷ ଲଗ୍ନ ତ ଆଉ ମାତ୍ର ଦୁଇଦିନ ରହିଲା । ଏତେ ଶୀଘ୍ର ମୁଁ କେମିତି କ'ଣ କରିବି ?

ଗିରୀଶ ତମେ ବୁଝୁନ ସୁଧାକର । ଝିଅ ଘିଅ, ବେଶୀଦିନ ରଖି ବସିଲେ ତମର କ୍ଷତି । ତା ଛଡ଼ା ଭଲ ପ୍ରସ୍ତାବଟା ଆଖି ବୁଜି କରିଯାଅ, ନ ହେଲେ ପସ୍ତେଇବ । ନ ହେଲା ଏବେ ଯାହା ଦେବାନେବା କରିଥାନ୍ତ, ପନ୍ଦର ଦିନ ପରେ ଦେଲେ କ'ଣ ଚଳିବନି ?

ସୁଧାକର : ମୁଁ ତ ବେଶୀ କିଛି ଦେଇପାରିବିନି ।

ଗିରୀଶ ଥରେ କହିଲି ପରା । ଦାଣ୍ଡ ସୁନ୍ଦର ଦେଖି ଯାହା ଉପହାର ଦେବ, ସେଥିରେ ସେ ଖୁସି । ସେ କ'ଣ ତମକୁ କିଛି ମାଗୁଛନ୍ତି ? ତାଙ୍କୁ

Digitized by srujanika@gmail.com

ପରା କେତେ କିଏ ହାତଯୋଡ଼ି ଯାଚୁଛି, ହେଲେ ତମ ଝିଅକୁ ଭାରି ପସନ୍ଦ ।

ସୁଧାକର : ତମେ ମୋ ଝିଅକୁ କୂଳରେ ଲଗେଇଦେଲ । କେତେ ବଡ଼ ବୋଝରୁ ମତେ ମୁକ୍ତି ଦେଲ ।

ଗିରୀଶ ଥାଉ ସୁଧାକରବାବୁ । ମୋର ତ ସେଇଟା ଧର୍ମ । ତମ ଝିଅ କିଏ ମୋ ଝିଅ କିଏ ? ମୁଁ ଗିରୀଶ ମହାନ୍ତିଟି । ଯେଉଁଥିରେ ହାତ ଦେବି, ନିଶ୍ଚୟ କରିବି । ହଉ ଏଥର ଯୋଗାଡ଼ରେ ଲାଗିଯାଅ । କାଲି ନିର୍ବନ୍ଧଟା ସାରିଦେବା ।

ସୁଧାକର : କିନ୍ତୁ ହଠାତ୍ ଏତେ ଟଙ୍କା ଯୋଗାଡ଼ କରିବି କେମିତି ? କିଏ ବା ଦେବ ?

ଗିରୀଶ ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ । କିଛି ନ ହେଲେ ଜମି ମାଣେ ବିକି ଦିଅ ।

ସୁଧାକର : ଜମି ବୋଲି ତ ୨ ମାଣ । ବିକିଦେଲେ ସଂସାର ଚଳେଇବି କେମିତି ?

ଗିରୀଶ ଆରେ, ତମେ ମରଦ ପୁଅ ଡରୁଛ କାହିଁକି ? ହେଲେ ଝିଅକୁ ବାହା ନ ଦେଇ ବୁଢ଼ୀ କରି ବସିଲେ ଦୁନିଆଁ କ'ଣ କହିବ ? ସମାଜ କ'ଣ କହିବ ?

ସୁଧାକର : ଠିକ୍ ଅଛି । ସେଇଆ କରିବି । କିନ୍ତୁ ବେଶୀ କିଛି ଦେବାର କ୍ଷମତା ମୋର ନାହିଁ ।

ଗିରୀଶ ଆଗେ ହାତ ଗଣ୍ଠିଟା ପଡ଼ିଯାଉ । ତମେ ଯାଅ ତମ କାମ କର । ମୁଁ ଯାଏ ଚୌଧୁରୀବାବୁଙ୍କୁ ଖବରଟା ଦେଇଆସେ । ବାହାଘର ପାଇଁ ସେମାନେ ବି ପ୍ରସ୍ତୁତ ହେବେ ।

ସୁଧାକର : ରୁହନ୍ତୁ ଚା' ଜଳଖିଆ ଟିକେ ଖାଇଯିବେ । ଆରେ ସୀମା ।

ଗିରୀଶ ସେ ସବୁ ଆଜି ଥାଉ । ସଂପର୍କ ତ ଆରମ୍ଭ ହେଲା । ଏଣିକି କେତେ ଆସିବି କେତେ ଖାଇବି । ନାଁ କ'ଣ କହୁଛନ୍ତି ? (ହସିଛି)

Digitized by srujanika@gmail.com

ସୁଧାକର : ହଉ ! ଆପଣଙ୍କ ଇଚ୍ଛା ।

ଗିରୀଶ ମୁଁ ଏବେ ଆସୁଛି ସୁଧାକର । (ଚାଲିଯାଇଛନ୍ତି)

## ॥ ତୃତୀୟ ଦୃଶ୍ୟ ॥

ସୁଧାକର : ସୀମା ବୋଉ ! ସୀମାବୋଉ ! ଆରେ ଶୁଣିଯାଅ ।

ମାଳତୀ କ'ଣ କୁହ ! ଏମିତି ଗଡ଼ ଜିଣିଲା ଭଳି ହଉଛ ଯେ ।

ସୁଧାକର : ଭଗବାନ୍ ଆମ ଡାକ ଶୁଣିଛନ୍ତି ସୀମାବୋଉ । ସୀମା ମୋର ଭାଗ୍ୟବତୀ । ମୋ ଝିଅ ଏଥର ଅଭାବ ବୋଲି କିଛି ଜାଣିବନି ।

ମାଳତୀ କଥାଟା ଟିକେ ଫିଟେଇ କୁହ ।

ସୁଧାକର : ଚୌଧୁରୀବାବୁ ଆଉ ତାଙ୍କ ପୁଅ ସୀମାକୁ ଦେଖି ରାଜି ଅଛନ୍ତି । ସୀମା ତାଙ୍କ ମନକୁ ପାଇଛି । ତାକୁ ବୋହୂ କରିନେବାକୁ ତାଙ୍କର ଇଚ୍ଛା । କାଲି ବଳଦେବଜୀଉ ମନ୍ଦିରରେ ନିର୍ବନ୍ଧ କରିବାକୁ ଖବର ପଠେଇଛନ୍ତି । ଏଇ ଶେଷ ଲଗ୍ନରେ ବାହାଘର । ବାହାଘର ସାରିଦେଲେ ତାଙ୍କ ପୁଅ ବମ୍ବେ ଯିବ ।

ମାଳତୀ ଏଇ ଶେଷ ଲଗ୍ନରେ ! ମାନେ, କାଲି ଗଲେ ପଅର ଦିନ ।

ସୁଧାକର : ହଁ, ସୀମା ବୋଉ । ପୁଣି ଯାଇ ବାହା ତିଥି ଆଷାଢ଼ ମାସରେ । ପୁଅବାଲା ଯଦି ଚାହୁଁଛନ୍ତି, ଆମେ ବିଳମ୍ବ କରିବା କାହିଁକି ? ତା ଛଡ଼ା, ଏଭଳି ପ୍ରସ୍ତାବ ଜୁଟିବା ମୁସ୍କିଲ୍ ।

ମାଳତୀ ହେଲେ, ତାଙ୍କ ଘରକୁ ଦେଲା ଭଳି କ୍ଷମତା କ'ଣ ଆମର ଅଛି ?

ସୁଧାକର : ତମେ ଜାଣିନା ମାଳତୀ, ଚୌଧୁରୀବାବୁ ଭାରି ଭଲ ଲୋକ । ଦେବତା ଭଳି ମଣିଷ । ପୁଅ ତାଙ୍କର ଇଞ୍ଜିନିୟର୍, ଜମିବାଡ଼ି ତ ଅମାପ । ଧନର କ'ଣ ଅଭାବ ଅଛି ଯେ, ସେମାନେ ଯୌତୁକ ଚାହିଁବେ । ସୀମାକୁ ଦେଖି ସେମାନେ ଖୁସି । ତାଙ୍କର କିଛି demand ନାହିଁ ବୋଲି କହିଲେ । ଯାହା ଆମେ ଜୋଇଁକୁ ଖୁସିରେ ଦେଇପାରିବା ।

Digitized by srujanika@gmail.com

ମାଳତୀ : ସତରେ, ଏଭଳି ଲୋକ ଆଜିକାଲି ମିଳିବା କଷ୍ଟ; ନ ହେଲେ ଆମେ କିଏ ଚୌଧୁରୀ କିଏ ? ଯା ହେଉ ସୀମା ମୋର ରାଣୀ ହେବ । ଷୋଳ ବରଷର ଝିଅ ମନ ଜାଣି ଶାଢ଼ୀ କି ଗହଣା ଖଣ୍ଡେ ଆମେ ଦେଇ ପାରୁନେ । କେତେ କୋଉଠୁ ବାହାଘର ଭାଙ୍ଗିଲାଣି । ଏତେ ଦିନେ ତା'ର ଦୁଃଖ ସରିଲା, ମା' ଭଗବତୀ ମୋ ଡାକ ଶୁଣିଲେ । (କାନ୍ଦିଛନ୍ତି)

ସୁଧାକର : ମାଳତୀ ! କାନ୍ଦିବା ଆରମ୍ଭ କରିଦେଲଣି ? ଛିଃ ଛିଃ ତମ ମାଇପି ଜାତିଟା ଏଇଆ ? ମଝିରେ ଗୋଟିଏ ଦିନ ରହିଲା । କ'ଣ କେମିତି ହେବ, ସେକଥା ଚିନ୍ତା ନାହିଁ । ବର୍ତ୍ତମାନ କ'ଣ କାନ୍ଦିବା ବେଳ ?

ମାଳତୀ ତମେ କ'ଣ କରୁଛ କର । ମୋ କାମ ମୁଁ କରିବିନି !

ସୁଧାକର : ତମେ ଯିବଟି । ଯାଇ ବଡ଼ି ମଙ୍ଗୁଳେଇ ଗୁଆ ପଠେଇବାର ବ୍ୟବସ୍ଥା କର । ମୁଁ ଯାଇଛି । ସିଆଡ଼େ କେତେ କାମ । ଅରୁଣ କୁଆଡ଼େ ଗଲା । ଆରେ ଅରୁ ଅରୁ (ଚାଲିଯାଇଛନ୍ତି) ।

(ମାଳତୀ ଓ ସୀମା)

ମାଳତୀ ସୀମାଲୋ ! ଆଜିଠୁ ତୋର ଗେଲବସର ସରିଗଲା । ଏବେ ଶାଶୁଘର ବୋହୂ ହେବୁ । ହାତେ ମାପି ଚାଖଣ୍ଡେ ଚାଲିବୁ ।

ସୀମା ବୋଉ ! ମତେ କେମିତି ତଡ଼ିବୁ ବୋଲି ତୋ ଆଖିକୁ ନିଦ ନାହିଁ ? (କାନ୍ଦିଛି) ।

ମାଳତୀ ଝିଅ ଜନମ ପରଘରକୁ । ତତେ କ'ଣ ଆମେ ସବୁଦିନେ ରଖିପାରିଥାନ୍ତୁ ! ତୋର କୋଉ କଥାରେ ଊଣା ହେବନି ମାଆ ! ବାପଘର ସିନା ତୋର ଗରିବ, ହେଲେ ତୁ ଶାଶୁଘରେ ରାଣୀ ହେବୁ ।

ସୀମା ବୋଉ ! (କାନ୍ଦିଛି)

ମାଳତୀ ଜୋଇଁ ତ ରଜାପୁଅ ଭଳି । ବଡ଼ ଚାକିରି କରିଛନ୍ତି ହେଲେ ବି ସମସ୍ତଙ୍କ ମନ ନେଇ ଚଳିବୁ । ଯେମିତି ବାପର ନାଁ ନ ପଡ଼େ ।

Digitized by srujanika@gmail.com

ସୀମା (କାନ୍ଦିଛି)

ମାଳତୀ ମୋ ସୁନାଝିଅଟା କାନ୍ଦେନା । ଭଗବାନ୍ ତୋର କପାଳ ସିନ୍ଦୂରକୁ ବଜ୍ର କରନ୍ତୁ । ତୋ ସୁଖ ଦେଖି ବାପାମାଆ ଦି'ଟାକୁ ଶାନ୍ତିରେ ଆଖି ବୁଜି ଦେବୁ । (କାନ୍ଦିଛନ୍ତି)

## ।। ଚତୁର୍ଥ ଦୃଶ୍ୟ ।।

[ବାହାଘର ବାଜା ବାଜୁଛି । ଲୋକଙ୍କର କୋଳାହଳ ଶୁଭୁଛି]

ସୁଧାକର : ମାଳତୀ ! ମାଳତୀ ! ଆରେ କିଏ କୁଆଡ଼େ ଗଲ ? ଆଉ ଅଳ୍ପସମୟ ପରେ ବର ଆସିଯିବ । ଦେଖେ ତେଣେ କ'ଣ ହେଲା ।

(ପଶି ଆସିଛନ୍ତି ଗିରୀଶବାବୁ)

ସୁଧାକର : ଆରେ ! ଆପଣ ନମସ୍କାର । ଆସନ୍ତୁ ଆସନ୍ତୁ, ଆରେ ଅରୁଣ ଗିଲାସେ ସର୍ବତ ଭାଇନାଙ୍କ ପାଇଁ ଆଣିଲୁ ।

ଗିରୀଶ ଥାଉ ସୁଧାକରବାବୁ । ମୁଁ ବସିବାକୁ ଆସିନି । ଆପଣଙ୍କ ସାଥିରେ ଟିକେ କଥା ଥିଲା ।

ସୁଧାକର : କ'ଣ ଗିରୀଶବାବୁ ? କୁହନ୍ତୁ, ଏମିତି ବିଚଳିତ ହେଉଛନ୍ତି କାହିଁକି ?

ଗିରୀଶ ମୁଁ କ'ଣ କରୁଥିଲି କି (ଢୋକଗିଳି) ଚୌଧୁରୀବାବୁ ଖବର ପଠାଇଛନ୍ତି, ଏ ବାହାଘର ହୋଇପାରିବ ନାହିଁ ।

ସୁଧାକର : କ'ଣ କହିଲ, କ'ଣ କହିଲ ? ଗିରୀଶବାବୁ ? କାହିଁକି ବାହାଘର ହେଇପାରିବନି ? ମୋର କ'ଣ ଦୋଷ ରହିଲା ?

ଗିରୀଶ ମୁଁ କିଛି ଜାଣେନା ।

ସୁଧାକର : ଝିଅ ମୋର ମଙ୍ଗୁଳା ସରିଲାଣି । ଖାଲି ବର ଆସିବାକୁ ଅପେକ୍ଷା । ଏ ବେଳରେ ଏମିତି ଅଶୁଭ କଥା ? କ'ଣ ହେବ ମୋ ଝିଅର ? କିଏ ତାକୁ ଆଉ ବାହାହେବ ? ଏ ସମାଜରେ ମୁଁ ମୁଣ୍ଡଟେକି ପାରିବି ତ ? (କାନ୍ଦିଛନ୍ତି)

Digitized by srujanika@gmail.com

ଗିରୀଶ : ମୁଁ କ'ଣ କରିପାରିବି । ତୁମ ଝିଅର ସବୁ ଭୁଲ୍ ଯେ, ହେଲେ ଟିକେ ଉଛକପାଳ, ଏଥିପାଇଁ ଚୌଧୁରୀବାବୁ ମନା କରିଦେଲେ ।

ସୁଧାକର : କ'ଣ ହେଲା ମୋ ଝିଅ ଉଛକପାଳି । ଅଲକ୍ଷଣୀ । କ'ଣ କହୁଛନ୍ତି ଆପଣ ? କାହିଁ ଦେଖିବାବେଳେ ତ ଚୌଧୁରୀବାବୁ କିଛି କହିଲେନି । ଚୌଧୁରୀଏ ଆଜି ଏ ନିନ୍ଦା ଦେଇ ବାହାଘର ଭାଙ୍ଗି ଦଉଛନ୍ତି କାହିଁକି ?

ଗିରୀଶ ଥରେ ତ କହିଲି । ତମ ଝିଅ ଉଛକପାଳି । ଏ ବାହାଘର ହେଇପାରିବନି । ତାଙ୍କ ପୁଅକୁ କ'ଣ ଝିଅ ଅଭାବ ଅଛନ୍ତି ? ଆଜି ସକାଳେ ଦଶରଥପୁରର ରାମବାବୁଙ୍କ ଘରେ ପ୍ରସ୍ତାବ ସ୍ଥିର କରି ଆସିଲେ । ବର ସେଠିକି ଯିବ, ଏଠିକି ନୁହେଁ । ମୁଁ ଖବରଟା ଦେବାକୁ ଆସିଥିଲି ।

ସୁଧାକର : ଗିରୀଶବାବୁ । ଚୌଧୁରୀଏ ଶେଷରେ ମତେ ମଝି ନଈରେ ଭସେଇ ଦେଲେ । ତାଙ୍କ ପୁଅକୁ ସିନା ଝିଅର ଅଭାବ ହେବନି । ହେଲେ ମୋ ଝିଅକୁ ବାହା ହେବ କିଏ ? ଯେଉଁ କଳଙ୍କ ତା ନାଁରେ ରହିଗଲା ସେ କଳଙ୍କ ଦୂର ହେବ କେମିତି ?

ଗିରୀଶ ସୁଧାକରବାବୁ ! ଏ ବାଜେ କଥା ଶୁଣିବାକୁ ମୋର ସମୟ ନାହିଁ । ତମ ଝିଅ ସେ କଥା ତମେ ବୁଝିବ ।

ସୁଧାକର : ମୁଁ ଆପଣଙ୍କ ଗୋଡ଼ ଧରୁଛି ଗିରୀଶବାବୁ ଆପଣ ମୋତେ ବଦନାମରୁ ରକ୍ଷା କରନ୍ତୁ । ମୋ ଝିଅକୁ ଅକୂଳରେ ଭସେଇ ଦିଅନ୍ତୁନି । ଚୌଧୁରୀଙ୍କୁ ବୁଝେଇ ଦିଅନ୍ତୁ, ସୀମା ମୋର କଳଙ୍କଶୂନ୍ୟା ।

ଗିରୀଶ (ବିରକ୍ତିରେ) ଏସବୁ ମତେ କହି ଲାଭ କ'ଣ ଅଛି ? ମୋ ଗୋଡ଼ଟା ଛାଡ଼ିବଟି—

ସୁଧାକର : ହେଲେ ମୁଁ କ'ଣ କରିବି ? ମୋ ଝିଅର କ'ଣ ହେବ ?

ଗିରୀଶ ତୁମେ କ'ଣ କରିବ ନ କରିବ । ସେ କଥା ତମେ ଜାଣ । ତମ ଝିଅର କ'ଣ ହେବ ନ ହେବ ସେ କଥା କ'ଣ ମୁଁ କହିବି ?

Digitized by srujanika@gmail.com

ଅଣ୍ଟିରେ ଧନ ଥିଲେ କେତେ କାଉ ଆସି ବସିବେ । ହଉ ଏଥର ମୁଁ ଚାଲିଲି (ଚାଲିଯାଇଛନ୍ତି)

ସୁଧାକର : ଗିରୀଶବାବୁ ! ଗିରୀଶବାବୁ ମତେ ଦୟା କରନ୍ତୁ ।

(ବାହାଘର ବାଜା ଓ କୋଳାହଳ ବନ୍ଦ ହେଇଯାଇଛି)

ସୁଧାକର : ମାଳତୀ ! ସବୁ ସରିଗଲା । ଏ ମୁହଁ ମୁଁ କାହାକୁ ଦେଖେଇବି ? ମୋ ସୀମାର କ'ଣ ହେବ ?

ମାଳତୀ (ଆସିଛନ୍ତି) ମା ଭଗବତୀ ଶେଷରେ ତୁ ଏଇଆ କଲୁ ? ମୋ ସୀମାକୁ ଅକୂଳରେ ଭସେଇ ଦେଲୁ । (କାନ୍ଦିଛନ୍ତି) ଚନ୍ଦ୍ରମା ଭଳି ଝିଅ ଦେହରେ କଳଙ୍କ ଲାଗିଲା । ସେ କଳଙ୍କ ଆଉ କ'ଣ ଲିଭିବ ? ଆଉ ମୋ ଝିଅକୁ କିଏ ବାହା ହେବ ?

ସୀମା (ଆସିଛି) ବୋଉ !

ସୁଧାକର : ସୀମା ! ମାଆ ମୋର... (କାନ୍ଦିଛନ୍ତି)

ମାଳତୀ ସୀମା ଲୋ ! ତୋ ଦୁଃଖ ଦେଖିବା ଆଗରୁ ମୁଁ ଯାହା ମରି ନ ଗଲି ।

ସୁଧାକର : ମୁଁ ତୋ ପାଇଁ କିଛି କରିପାରିଲିନିରେ ମାଆ । କିଛି କରିପାରିଲିନି । ଗିରୀଶବାବୁଙ୍କୁ ନେହୁରା ହେଲି । ତାଙ୍କ ଗୋଡ଼ ଧରିଲି । ହେଲେ-

ସୀମା ବାପା ! ମୁଁ କ'ଣ ଏତେ ବଡ଼ ବୋଝ ମୋ ପାଇଁ ଆପଣ ଗୋଟାଏ ପଶୁର ଗୋଡ଼ ଧରୁଥିଲେ ? ଛିଃ ! ଛିଃ ! ଆପଣଙ୍କ ଝିଅ ବୋଲି ମତେ ଲଜ୍ୟା ଲାଗୁଛି ।

ସୁଧାକର : ତୁ ଜଣେ ବାପାର ହୃଦୟକୁ ବୁଝିପାରିବୁନି ମାଆ !

ସୀମା ମୁଁ ସବୁ ବୁଝିଛି ବାପା ।

ମାଳତୀ ତୁ କିଛି ବୁଝିନୁ ସୀମା । ତୋ ନାଁରେ ଯେଉଁ ଅପବାଦ ଖେଳିଗଲା, କିଏ ତତେ ଆଉ ବୋହୂ କରିବ ।

ସୀମା ମୁଁ ବାହା ହେବିନି ବୋଉ !

ମାଳତୀ ସୀମା ! ତୁ କ'ଣ କହୁଛୁ ?

Digitized by srujanika@gmail.com

ꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥꕥ

ସୀମା : ମୁଁ ଠିକ୍ କହୁଛି ବୋଉ । କାହାରି କହିବା କଥାରେ ମୋର ଯାଏ ଆସେ ନାହିଁ । ମୋ ଜୀବନ ମୁଁ ନିଜେ ଗଢ଼ିବି । ମୁଁ ପାଠ ପଢ଼ିବି, ଚାକିରି କରିବି । କାହା ଉପରେ ବୋଝ ହେବିନି ।

ସୁଧାକର : ହେଲେ ଲୋକେ କହିବେ ସୁଧାକର ଝିଅକୁ ବାହା ନକରି ଝିଅ ଧନରେ ପୋଷି ହେଉଛି ।

ମାଳତୀ ହଁ ସୀମା ! ସାଇପଡ଼ିଶା ସମାଜ ସମସ୍ତେ ଆମକୁ ଥଟ୍ଟା କରିବେ । ମଙ୍ଗୁଳା କନ୍ୟାର ମୁହଁ ଚାହିଁଲେ ଅଶୁଭ ପାପ । ତୁ ଅଲକ୍ଷ୍ମୀ, ଦୁଷ୍ଟଚରିତ୍ରା କହି ନିନ୍ଦା କରିବେ ।

ସୀମା ବୋଉ ! ତିଳକୁ ତାଳ କରିବା ଲୋକଙ୍କର ଅଭ୍ୟାସ । ତା ବୋଲି ଅନ୍ଧ ଭଳି ସମାଜର ରାୟକୁ ମାନିନେବା କ'ଣ ଠିକ୍ ? ସମାଜ ଯଦି ଆମକୁ ସାହାଯ୍ୟ ନ କଲା, ଆମେ କାହିଁକି ତାର ଅନ୍ଧ ଶାସନକୁ ମାନିନେବା ? ଅନ୍ୟର ସମାଲୋଚନାକୁ ଶୁଣିବସିଲେ, ମଣିଷର ବଞ୍ଚିବା କଷ୍ଟକର ହେଇପଡ଼ିବ ।

ମାଳତୀ ତୁ ଜାଣିନୁ ସୀମା । ବାଡୁଅ ଝିଅକୁ ଘରେ ରଖିଲେ ପୂର୍ବପୁରୁଷ ଅସନ୍ତୁଷ୍ଟ ହୁଅନ୍ତି । ଘରର ଅମଙ୍ଗଳ ହୁଏ ।

ସୀମା ବୋଉ ! ଏଇ ଅନ୍ଧବିଶ୍ୱାସ କୁସଂସ୍କାରକୁ ଜାବୁଡ଼ି ଧରି ମଣିଷ ନିଜର ସର୍ବନାଶ କରିବସୁଛି । ଝିଅ ବାହା ନ ହେଲେ ଘରର ଅମଙ୍ଗଳ ହେବ ବୋଲି ତାକୁ କ'ଣ ଜାଣିଶୁଣି ମରଣ ମୁହଁକୁ ଠେଲିଦେବ ?

ସୁଧାକର : ସୀମା !

ସୀମା ହଁ ବାପା ! ମୂକ ପଶୁ ଭଳି ହୃଦୟହୀନ ଲୋକ ହାତରେ ନିଜ ଝିଅକୁ ସମର୍ପି ଦେଇ ବାପା ମାଙ୍କ କି ସୁଖ ପାଆନ୍ତି ?

ମାଳତୀ ଶାଶୁଘର ଝିଅ ପାଇଁ ସ୍ୱର୍ଗ, ସେଇଠି ତାର ଗତିମୁକ୍ତି । ସବୁ କିଛି ।

ସୀମା ସ୍ୱର୍ଗନର୍କର ପ୍ରଭେଦ ତୁ କ'ଣ ବୁଝୁ ବୋଉ । ନିଜର କର୍ମ ଦ୍ୱାରା ମଣିଷ ପୃଥିବୀକୁ ସ୍ୱର୍ଗ କରିପାରେ । ନର୍କ କରିପାରେ ମୁଁ କିନ୍ତୁ ଅନ୍ଧ ଭଳି ଏସବୁ ମାନିନେବାକୁ ପ୍ରସ୍ତୁତ ନୁହେଁ ।

Digitized by srujanika@gmail.com

ମାଳତୀ ତୁ କ'ଣ ଯେ କହୁଛୁ ସୀମା... ।

ସୀମା ମୁଁ ଘରେ ରହିଲେ ଏ ଘରର ଯଦି ଅମଙ୍ଗଳ ହେବ, ତେବେ ମୁଁ ଘର ଛାଡ଼ି ଚାଲିଯିବି ବାପା ।

ସୁଧାକର : ସୀମା ! ଏକଥା କହନା ମାଆ । ସମସ୍ତେ କହିବେ ଅପବାଦକୁ ଡରି ସୀମା ଘରଛାଡ଼ି ପଳେଇଲା । ନାଁ, ମୁଁ ଯେମିତି ହଉ, ତୋ ବାହାଘର କରେଇବି ।

ସୀମା ନା ବାପା । ମୁଁ କେବେହେଲେ ବାହା ହେବିନି । ମତେ ବାଧ କରନ୍ତୁନି । ବିବାହ ବ୍ୟଭିଚାର ନୁହେଁ ବାପା । ଏହା ଏକ ପବିତ୍ର ସମ୍ବନ୍ଧ । ଦୁଇଟି ଜୀବନର ସରଳ ପ୍ରବାହ ଗୋଟିଏ ଝିଅର ମନର ମୂଲ୍ୟ ଯେଉଁଠି ଅର୍ଥହୀନ, ସେଭଳି ବିବାହକୁ ମୁଁ କେବେହେଲେ ଗ୍ରହଣ କରିପାରିବିନି ।

ମାଳତୀ ସୀମା !

ସୀମା ହଁ ବୋଉ ! ମୁଁ ବି ଜଣେ ମଣିଷ । ମୋର ମଧ ଆଶା ଅଛି । ସ୍ୱପ୍ନ ଅଛି । ଭବିଷ୍ୟତର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅଛି । ସ୍ୱାଧୀନତା ଅଛି । ମୁଁ ମଣିଷ ଭଳି ବଞ୍ଚିବାକୁ ଚାହେଁ । ଅପବାଦ ଭୟରେ ନିଜତ୍ୱକୁ ବଳିଦେବାକୁ ଚାହେଁନା ।

ସୁଧାକର : ତୁ କ'ଣ କରିପାରିବୁ ସୀମା । ସବୁ ନିନ୍ଦା ଅପବାଦକୁ ଭୁଲି ତୁ କ'ଣ ସଂସାରର ସୀମା ଡେଇଁଯାଇ ପାରିବୁ ?

ସୀମା ମତେ ବିଶ୍ୱାସ କରନ୍ତୁ ବାପା । ମୁଁ ପାରିବି । ମୋର ସେ ଆତ୍ମବିଶ୍ୱାସ ଅଛି । ତତଲା ପାଣିରେ ଘର ପୋଡ଼ିଯାଏନା ବାପା । କାହାରି ସମାଲୋଚନା ମତେ ଲକ୍ଷ୍ୟହରା କରିପାରିବ ନାହିଁ ।

ମାଳତୀ ସୀମା (କାନ୍ଦିଛନ୍ତି) ତୋ ମଥାରେ କ'ଣ ଆଉ ସିନ୍ଦୂର ଲାଗିବନି ହାତରେ ଶଂଖା ସାଜିବନି ? ବାହାଘରର ଶୁଭ ସାହାନାଇ ବାଜିବନି ?

Digitized by srujanika@gmail.com

ସୀମା : ଝିଅ ଜୀବନରେ କେବଳ ମଥାର ସିନ୍ଦୂର, ହାତର ଶଂଖା, ଶୁଭ ସାହାନାଇ ଏକମାତ୍ର ଲକ୍ଷ୍ୟ ନୁହେଁ । ଯେଉଁ ଶଂଖା ସିନ୍ଦୂରକୁ ସମ୍ମାନ ମଣିଷ ଦେଇପାରୁନି, ତାକୁ ବୋଝ ଭଳି ବୋଉ ଜୀବନକୁ ଜାଳିବାରେ ମାନେ କିଛି ନାହିଁ ।

ମାଳତୀ କେତେ ସ୍ୱପ୍ନ ଦେଖିଥିଲି । କେତେ ଆଶା କରିଥିଲି ହେଲେ... (କାନ୍ଦିଛନ୍ତି)

ସୀମା ବୋଉ ! ମଣିଷର ସବୁ ସ୍ୱପ୍ନ କ'ଣ ସତ ହୁଏ ? ମଣିଷ ମନର ସବୁ ଆଶା ଯଦି ସଫଳ ହେଉଥାନ୍ତା, ତା'ହେଲେ ତୋ ଆଖିରେ ଆଜି ଲୁହ ନଥାନ୍ତା ।

ମାଳତୀ ସୀମା !

ସୀମା ମୁଁ ତ ଏକା ନୁହେଁ ବୋଉ । ଏ ଦେଶରେ ଏମିତି କେତେ ଝିଅଙ୍କର ଜୀବନପଥ ପରିବର୍ତ୍ତିତ ହେଇଯାଉଛି । ତୁ ମିଛଟାରେ ଭାଙ୍ଗିପଡୁଛୁ ବୋଉ ।

ସୁଧାକର : ସୀମା ! ତୁ ଯଦି ମୋର ପୁଅଟିଏ ହେଇଥାନ୍ତୁ ।

ସୀମା ମୁଁ ଆପଣଙ୍କର ପୁଅ ବାପା । ମୁଁ ପାଠ ପଢ଼ିବି ଚାକିରି କରିବି । ସାନଭାଇ ଭଉଣୀଙ୍କୁ ମଣିଷ କରିବି । ବାପାମାଆଙ୍କ ସେବା କରିବାର ସୌଭାଗ୍ୟ କେତେଜଣ ଝିଅଙ୍କୁ ମିଳେ ? ତମ ସୀମା କେବେ ଅବାଟରେ ଯିବନି । ଏ ଦୁନିଆକୁ ମୁଁ ଠିକ୍ ଚିହ୍ନିଛି ।

ସୁଧାକର : ଆଉ ତତେ ମୁଁ ବାଧାଦେବିନି ମାଆ । ତୁ ଯେଉଁଥିରେ ସୁଖୀ ହେବୁ, ତାହାହିଁ କର ।

ମାଳତୀ କ'ଣ କହୁଛ ତମେ ? ସୀମାଭଳି ତମେ ବି ପାଗଳ ହେଇଗଲ ?

ସୁଧାକର : ନା, ମାଳତୀ ସୀମା ଠିକ୍ କହିଛି । ତା ଜୀବନର ଏକଥା ବଡ଼ ଧକ୍କାକୁ ସେ ଯଦି ସହିପାରିଲା, ଆମେ ତା ପାଇଁ କ'ଣ ଏତିକି ତ୍ୟାଗ କରିପାରିବାନି ? ଆମେ ତାର ଜନ୍ମଦାତା । ସନ୍ତାନର ମଙ୍ଗଳ କାମନା କରିବା ଆମର ଧର୍ମ ।

Digitized by srujanika@gmail.com

ମାଳତୀ ତୁ କ'ଣ ଯେ କହୁଛୁ ସୀମା... ।

ସୀମା ମୁଁ ଘରେ ରହିଲେ ଏ ଘରର ଯଦି ଅମଙ୍ଗଳ ହେବ, ତେବେ ମୁଁ ଘର ଛାଡ଼ି ଚାଲିଯିବି ବାପା ।

ସୁଧାକର : ସୀମା ! ଏକଥା କହନା ମାଆ । ସମସ୍ତେ କହିବେ ଅପବାଦକୁ ଡରି ସୀମା ଘରଛାଡ଼ି ପଳେଇଲା । ନାଁ, ମୁଁ ଯେମିତି ହଉ, ତୋ ବାହାଘର କରେଇବି ।

ସୀମା ନା ବାପା । ମୁଁ କେବେହେଲେ ବାହା ହେବିନି । ମତେ ବାଧ କରନ୍ତୁନି । ବିବାହ ବ୍ୟଭିଚାର ନୁହେଁ ବାପା । ଏହା ଏକ ପବିତ୍ର ସମ୍ବନ୍ଧ । ଦୁଇଟି ଜୀବନର ସରଳ ପ୍ରବାହ ଗୋଟିଏ ଝିଅର ମନର ମୂଲ୍ୟ ଯେଉଁଠି ଅର୍ଥହୀନ, ସେଭଳି ବିବାହକୁ ମୁଁ କେବେହେଲେ ଗ୍ରହଣ କରିପାରିବିନି ।

ମାଳତୀ ସୀମା !

ସୀମା ହଁ ବୋଉ ! ମୁଁ ବି ଜଣେ ମଣିଷ । ମୋର ମଧ୍ୟ ଆଶା ଅଛି । ସ୍ୱପ୍ନ ଅଛି । ଭବିଷ୍ୟତର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅଛି । ସ୍ୱାଧୀନତା ଅଛି । ମୁଁ ମଣିଷ ଭଳି ବଞ୍ଚିବାକୁ ଚାହେଁ । ଅପବାଦ ଭୟରେ ନିଜତ୍ୱକୁ ବଳିଦେବାକୁ ଚାହେଁନା ।

ସୁଧାକର : ତୁ କ'ଣ କରିପାରିବୁ ସୀମା । ସବୁ ନିନ୍ଦା ଅପବାଦକୁ ଭୁଲି ତୁ କ'ଣ ସଂସାରର ସୀମା ଡେଇଁଯାଇ ପାରିବୁ ?

ସୀମା ମତେ ବିଶ୍ୱାସ କରନ୍ତୁ ବାପା । ମୁଁ ପାରିବି । ମୋର ସେ ଆତ୍ମବିଶ୍ୱାସ ଅଛି । ତତଲା ପାଣିରେ ଘର ପୋଡ଼ିଯାଏନା ବାପା । କାହାରି ସମାଲୋଚନା ମତେ ଲକ୍ଷ୍ୟହରା କରିପାରିବ ନାହିଁ ।

ମାଳତୀ ସୀମା (କାନ୍ଦିଛନ୍ତି) ତୋ ମଥାରେ କ'ଣ ଆଉ ସିନ୍ଦୂର ଲାଗିବନି ହାତରେ ଶଂଖା ସାଜିବନି ? ବାହାଘରର ଶୁଭ ସାହାନାଇ ବାଜିବନି ?

Digitized by srujanika@gmail.com

ସୀମା : ଝିଅ ଜୀବନରେ କେବଳ ମଥାର ସିନ୍ଦୂର, ହାତର ଶଂଖା, ଶୁଭ ସାହାନାଇ ଏକମାତ୍ର ଲକ୍ଷ୍ୟ ନୁହେଁ । ଯେଉଁ ଶଂଖା ସିନ୍ଦୂରକୁ ସମ୍ମାନ ମଣିଷ ଦେଇପାରୁନି, ତାକୁ ବୋଝ ଭଳି ବୋଉ ଜୀବନକୁ ଜାଳିବାରେ ମାନେ କିଛି ନାହିଁ ।

ମାଳତୀ କେତେ ସ୍ୱପ୍ନ ଦେଖିଥିଲି । କେତେ ଆଶା କରିଥିଲି ହେଲେ... (କାନ୍ଦିଛନ୍ତି)

ସୀମା ବୋଉ ! ମଣିଷର ସବୁ ସ୍ୱପ୍ନ କ'ଣ ସତ ହୁଏ ? ମଣିଷ ମନର ସବୁ ଆଶା ଯଦି ସଫଳ ହେଉଥାନ୍ତା, ତା'ହେଲେ ତୋ ଆଖିରେ ଆଜି ଲୁହ ନଥାନ୍ତା ।

ମାଳତୀ ସୀମା !

ସୀମା ମୁଁ ତ ଏକା ନୁହେଁ ବୋଉ । ଏ ଦେଶରେ ଏମିତି କେତେ ଝିଅଙ୍କର ଜୀବନପଥ ପରିବର୍ତ୍ତିତ ହେଇଯାଉଛି । ତୁ ମିଛଟାରେ ଭାଙ୍ଗିପଡୁଛୁ ବୋଉ ।

ସୁଧାକର : ସୀମା ! ତୁ ଯଦି ମୋର ପୁଅଟିଏ ହେଇଥାନ୍ତୁ ।

ସୀମା ମୁଁ ଆପଣଙ୍କର ପୁଅ ବାପା । ମୁଁ ପାଠ ପଢ଼ିବି ଚାକିରି କରିବି । ସାନଭାଇ ଭଉଣୀଙ୍କୁ ମଣିଷ କରିବି । ବାପାମାଆଙ୍କ ସେବା କରିବାର ସୌଭାଗ୍ୟ କେତେଜଣ ଝିଅଙ୍କୁ ମିଳେ ? ତମ ସୀମା କେବେ ଅବାଟରେ ଯିବନି । ଏ ଦୁନିଆକୁ ମୁଁ ଠିକ୍ ଚିହ୍ନିଛି ।

ସୁଧାକର : ଆଉ ତତେ ମୁଁ ବାଧାଦେବିନି ମାଆ । ତୁ ଯେଉଁଥିରେ ସୁଖୀ ହେବୁ, ତାହାହିଁ କର ।

ମାଳତୀ କ'ଣ କହୁଛ ତମେ ? ସୀମାଭଳି ତମେ ବି ପାଗଳ ହେଇଗଲ ?

ସୁଧାକର : ନା, ମାଳତୀ ସୀମା ଠିକ୍ କହିଛି । ତା ଜୀବନର ଏକଥା ବଡ଼ ଧକ୍‌କାକୁ ସେ ଯଦି ସହିପାରିଲା, ଆମେ ତା ପାଇଁ କ'ଣ ଏତିକି ତ୍ୟାଗ କରିପାରିବାନି ? ଆମେ ତାର ଜନ୍ମଦାତା । ସନ୍ତାନର ମଙ୍ଗଳ କାମନା କରିବା ଆମର ଧର୍ମ ।

Digitized by srujanika@gmail.com

| | |
|---|---|
| ସୀମା | ତୁ ବ୍ୟସ୍ତ ହନା ବୋଉ । ସମାଜ ଆଗରେ ତ ମୁଁ ନିଜକୁ ଛୋଟ କରିଦେଉନି । ବରଂ ସମସ୍ତଙ୍କର ସମାଲୋଚନା ମୋ ଜୀବନ ଗଢ଼ିବାର ସୋପାନ ଶ୍ରେଣୀ । ତୁ ଦେଖିବୁ ବୋଉ, ସୀମା ସହଜରେ ସବୁ ବାଧାବିଘ୍ନର ସୀମାରେଖାକୁ ଅତିକ୍ରମ କରିଯିବ । |
| ସୁଧାକର : | ହଁ ସୀମା । ତୁ ପଢ଼ିବୁ, ବହୁତ ପଢ଼ିବୁ, ଚାକିରି କରିବୁ । ତୋ ଭାଗ୍ୟଲିପିକୁ ତୁ ନିଜେ ବଦଳାଇ ଦେଇପାରିବୁ ମାଆ । |
| ସୀମା | ବାପା ! |
| ସୁଧାକର : | ତୁ ମୋ ଆଖି ଖୋଲି ଦେଇଛୁ ମାଆ; ଝିଅ କେବେ ବାପାମାଆଙ୍କର ବୋଝ ନୁହେଁ । ବରଂ କଲ୍ୟାଣମୟୀ । |
| ସୀମା | (କୋହଭରା କଣ୍ଠରେ) ବାପା ! |
| ଶ୍ରୀକାନ୍ତ | ଇସ୍ କି ଜଘନ୍ୟ । ଏମିତି ଲୋକ ଅଛନ୍ତି ବୋଲି ମୁଁ ଭାବିପାରୁନି । |
| ସୀମା | (ହସି) ତମେ ଜଙ୍ଗଲର ଭିତର ଦେଖିନା ଶ୍ରୀକାନ୍ତ । ଏ ଦୁନିଆଟା ସେମିତି ଏକ ଭୟଙ୍କର ଜଙ୍ଗଲ । ଏଠି ମଣିଷରୂପୀ ରାକ୍ଷସ ଅଛନ୍ତି । ଅର୍ଥ, ପ୍ରତିପତ୍ତି, ମର୍ଯ୍ୟାଦାର ଲୋଭରେ, ନିଷ୍କଳଙ୍କ କୁମାରୀ ମଥାରେ କଳଙ୍କ ଟୀକା ପିନ୍ଧେଇବାକୁ ସେମାନେ କୁଣ୍ଠାବୋଧ କରନ୍ତିନି । |
| ଶ୍ରୀକାନ୍ତ | କିନ୍ତୁ ତମେ ଏଠି- ଏତେଦୂରରେ Lectureship କଲ କାହିଁକି ? |
| ସୀମା | ସେ ଘଟଣା ପରଠାରୁ ମୁଁ ବିବାହ କରିବିନି ବୋଲି ପ୍ରତିଜ୍ଞା କଲି । M.A. ଯାଏ ପଢ଼ିଲି । ତାପରେ ଏଇଠି ମୋର posting । |
| ଶ୍ରୀକାନ୍ତ | ମୁଁ ବୁଝିପାରୁଛି ସୀମା । ତମ ମନର କୋମଳତାକୁ କିଭଳି ନଷ୍ଟ କରିଦିଆଯାଇଛି, କିନ୍ତୁ ତମେ ସମସ୍ତଙ୍କୁ ସମାନ ଭାବୁଛ କାହିଁକି ? ସବୁ ବାପାମାଆ ଚୌଧୁରୀଙ୍କ ଭଳି ନୁହଁନ୍ତି । ସବୁ ଯୁବକ ମଧ୍ୟ ଅମିୟଙ୍କ ଭଳି ନୁହଁନ୍ତି । |
| ସୀମା | ମୁଁ ମାନୁଛି ଶ୍ରୀକାନ୍ତ । କିନ୍ତୁ ଅମିୟଙ୍କ ଭଳି ଜଣେ ଉଚ୍ଚଶିକ୍ଷିତ ଯୁବକର କ'ଣ ବୁଦ୍ଧି ବୃତ୍ତି ନଥିଲା । ଗୋଟିଏ ଝିଅର ଜୀବନକୁ ଖିନ୍‌ଭିନ୍ କରିଦେବା ପୂର୍ବରେ ସେ କ'ଣ ନିଜ ବାପାଙ୍କୁ ବୁଝାଇ ପାରି ନଥାନ୍ତେ ? |

Digitized by srujanika@gmail.com

ଶ୍ରୀକାନ୍ତ : ଏଇଟା ତାଙ୍କର ଦୁର୍ବଳତା ହେଇପାରେ । ସମାଜର ପରିବର୍ତ୍ତନକୁ ପୁରୁଖାମାନେ ଏତେ ଶୀଘ୍ର ଗ୍ରହଣ କରିପାରନ୍ତିନି ସୀମା । ଆମେ ପାରିବା । ଆମ ଭଳି କେତେ ଜଣ ଆଗେଇ ଆସିଲେ- ପରିବର୍ତ୍ତନ ଆପେ ଆପେ ଆସିଯିବ ।

ସୀମା କିନ୍ତୁ ଧନର ଲୋଭକୁ କେହି କ'ଣ ତ୍ୟାଗ କରିପାରେ ?

ଶ୍ରୀକାନ୍ତ Don't be Silly ସୀମା । ତମେ ଶିକ୍ଷିତା ସ୍ୱାବଲମ୍ବୀ । ତମର ଆତ୍ମବିଶ୍ୱାସ ରହିବା ଦରକାର । ତମେ ଚାହିଁଲେ ତମ ମନ ଭିତରୁ ସବୁ ଘୃଣା- ସବୁ ତିକ୍ତତାକୁ ଦୂରେଇ ଦେଇପାରିବ ।

ସୀମା ଶ୍ରୀକାନ୍ତ !

ଶ୍ରୀକାନ୍ତ ହଁ ସୀମା ! ଅତୀତକୁ ଜାବୁଡ଼ି ଧରିଲେ ବର୍ତ୍ତମାନ ଓ ଭବିଷ୍ୟତକୁ ଗଢ଼ିହୁଏନା । ପ୍ରତିହିଂସା ପରାୟଣ ହୋଇ ତମେ ନିଜର କ୍ଷତି କରୁଛ । ଅନ୍ୟକୁ ମଧ୍ୟ ଦୁଃଖ ଦେଉଛ ।

ସୀମା ମୁଁ ଆଉ କ'ଣ କରିପାରିବି ଶ୍ରୀକାନ୍ତ ?

ଶ୍ରୀକାନ୍ତ ତମେ ସବୁ ପାରିବ ସୀମା । ସବୁ କରିପାରିବ । ତମେ କ'ଣ ଭାବୁଛ- ତମେ ସାରାଜୀବନ କୁମାରୀ ରହିଗଲେ ସମସ୍ୟାର ସମାଧାନ ହେଇଯିବ । ହୁଏତ ତମ ସମସ୍ୟାର ସମାଧାନ ହେଇଯାଇପାରେ; କିନ୍ତୁ ଏ ସମାଜର ? ତମ ଭଳି ଅନେକ ଅବହେଳିତ ଝିଅମାନଙ୍କ ପାଇଁ ତମେ କିଛି କରିପାରିବନି ।

ସୀମା ଶ୍ରୀକାନ୍ତ !

ଶ୍ରୀକାନ୍ତ ତମେ ମୋ ବାପାଙ୍କୁ ଭଲଭାବେ ଜାଣିଛ ସୀମା । ମୁଁ କେବଳ ତମ ଉତ୍ତରକୁ ଅପେକ୍ଷା କରିଛି ।

ସୀମା ତମ ବାପା ଭାରି ଉଦାର- ବହୁତ ସରଳ । କିନ୍ତୁ ....

ଶ୍ରୀକାନ୍ତ କିନ୍ତୁ କ'ଣ ସୀମା । ବିବାହ ଏକ ବ୍ରତ । ଏକ ପବିତ୍ର ସଂକଳ୍ପ ସୀମା । ଯୌତୁକ ଭଳି କଳଙ୍କ- ବୈବାହିକ ଜୀବନର ପବିତ୍ରତାକୁ ନଷ୍ଟ କରେ । ବିବାହର ଉଦ୍ଦେଶ୍ୟ କେବଳ ଭୋଗ ନୁହେଁ, ଯୌତୁକ

Digitized by srujanika@gmail.com

ସୀମା ତୁ ବ୍ୟସ୍ତ ହନା ବୋଉ । ସମାଜ ଆଗରେ ତ ମୁଁ ନିଜକୁ ଛୋଟ କରିଦେଉନି । ବରଂ ସମସ୍ତଙ୍କର ସମାଲୋଚନା ମୋ ଜୀବନ ଗଢ଼ିବାର ସୋପାନ ଶ୍ରେଣୀ । ତୁ ଦେଖିବୁ ବୋଉ, ସୀମା ସହଜରେ ସବୁ ବାଧାବିଘ୍ନର ସୀମାରେଖାକୁ ଅତିକ୍ରମ କରିଯିବ ।

ସୁଧାକର : ହଁ ସୀମା । ତୁ ପଢ଼ିବୁ, ବହୁତ ପଢ଼ିବୁ, ଚାକିରି କରିବୁ । ତୋ ଭାଗ୍ୟଲିପିକୁ ତୁ ନିଜେ ବଦଳାଇ ଦେଇପାରିବୁ ମାଆ ।

ସୀମା ବାପା !

ସୁଧାକର : ତୁ ମୋ ଆଖି ଖୋଲି ଦେଇଛୁ ମାଆ; ଝିଅ କେବେ ବାପାମାଆଙ୍କର ବୋଝ ନୁହେଁ । ବରଂ କଲ୍ୟାଣମୟୀ ।

ସୀମା (କୋହଭରା କଣ୍ଠରେ) ବାପା !

ଶ୍ରୀକାନ୍ତ ଇସ୍ କି ଜଘନ୍ୟ । ଏମିତି ଲୋକ ଅଛନ୍ତି ବୋଲି ମୁଁ ଭାବିପାରୁନି ।

ସୀମା (ହସି) ତମେ ଜଙ୍ଗଲର ଭିତର ଦେଖିନା ଶ୍ରୀକାନ୍ତ । ଏ ଦୁନିଆଟା ସେମିତି ଏକ ଭୟଙ୍କର ଜଙ୍ଗଲ । ଏଠି ମଣିଷରୂପୀ ରାକ୍ଷସ ଅଛନ୍ତି । ଅର୍ଥ, ପ୍ରତିପତ୍ତି, ମର୍ଯ୍ୟାଦାର ଲୋଭରେ, ନିଷ୍କଳଙ୍କ କୁମାରୀ ମଥାରେ କଳଙ୍କ ଟୀକା ପିନ୍ଧେଇବାକୁ ସେମାନେ କୁଣ୍ଠାବୋଧ କରନ୍ତିନି ।

ଶ୍ରୀକାନ୍ତ କିନ୍ତୁ ତମେ ଏଠି– ଏତେଦୂରରେ Lectureship କଲ କାହିଁକି ?

ସୀମା ସେ ଘଟଣା ପରଠାରୁ ମୁଁ ବିବାହ କରିବିନି ବୋଲି ପ୍ରତିଜ୍ଞା କଲି । M.A. ଯାଏ ପଢ଼ିଲି । ତାପରେ ଏଇଠି ମୋର posting ।

ଶ୍ରୀକାନ୍ତ ମୁଁ ବୁଝିପାରୁଛି ସୀମା । ତମ ମନର କୋମଳତାକୁ କିଭଳି ନଷ୍ଟ କରିଦିଆଯାଇଛି, କିନ୍ତୁ ତମେ ସମସ୍ତଙ୍କୁ ସମାନ ଭାବୁଛ କାହିଁକି ? ସବୁ ବାପାମାଆ ଚୌଧୁରୀଙ୍କ ଭଳି ନୁହଁନ୍ତି । ସବୁ ଯୁବକ ମଧ୍ୟ ଅମିୟଙ୍କ ଭଳି ନୁହଁନ୍ତି ।

ସୀମା ମୁଁ ମାନୁଛି ଶ୍ରୀକାନ୍ତ । କିନ୍ତୁ ଅମିୟଙ୍କ ଭଳି ଜଣେ ଉଚ୍ଚଶିକ୍ଷିତ ଯୁବକର କ'ଣ ବୁଦ୍ଧି ବୃତ୍ତି ନଥିଲା । ଗୋଟିଏ ଝିଅର ଜୀବନକୁ ଖିନ୍‌ଭିନ୍ କରିଦେବା ପୂର୍ବରେ ସେ କ'ଣ ନିଜ ବାପାଙ୍କୁ ବୁଝାଇ ପାରି ନଥାନ୍ତେ ?

Digitized by srujanika@gmail.com

ଶ୍ରୀକାନ୍ତ : ଏଇଟା ତାଙ୍କର ଦୁର୍ବଳତା ହେଇପାରେ । ସମାଜର ପରିବର୍ତ୍ତନକୁ ପୁରୁଖାମାନେ ଏତେ ଶୀଘ୍ର ଗ୍ରହଣ କରିପାରନ୍ତିନି ସୀମା । ଆମେ ପାରିବା । ଆମ ଭଳି କେତେ ଜଣ ଆଗେଇ ଆସିଲେ- ପରିବର୍ତ୍ତନ ଆପେ ଆପେ ଆସିଯିବ ।

ସୀମା କିନ୍ତୁ ଧନର ଲୋଭକୁ କେହି କ'ଣ ତ୍ୟାଗ କରିପାରେ ?

ଶ୍ରୀକାନ୍ତ Don't be Silly ସୀମା । ତମେ ଶିକ୍ଷିତା ସ୍ୱାବଲମ୍ବୀ । ତମର ଆତ୍ମବିଶ୍ୱାସ ରହିବା ଦରକାର । ତମେ ଚାହିଁଲେ ତମ ମନ ଭିତରୁ ସବୁ ଘୃଣା- ସବୁ ତିକ୍ତତାକୁ ଦୂରେଇ ଦେଇପାରିବ ।

ସୀମା ଶ୍ରୀକାନ୍ତ !

ଶ୍ରୀକାନ୍ତ ହଁ ସୀମା ! ଅତୀତକୁ ଜାବୁଡ଼ି ଧରିଲେ ବର୍ତ୍ତମାନ ଓ ଭବିଷ୍ୟତକୁ ଗଢ଼ିହୁଏନା । ପ୍ରତିହିଂସା ପରାୟଣ ହୋଇ ତମେ ନିଜର କ୍ଷତି କରୁଛ । ଅନ୍ୟକୁ ମଧ ଦୁଃଖ ଦେଉଛ ।

ସୀମା ମୁଁ ଆଉ କ'ଣ କରିପାରିବି ଶ୍ରୀକାନ୍ତ ?

ଶ୍ରୀକାନ୍ତ ତମେ ସବୁ ପାରିବ ସୀମା । ସବୁ କରିପାରିବ । ତମେ କ'ଣ ଭାବୁଛ- ତମେ ସାରାଜୀବନ କୁମାରୀ ରହିଗଲେ ସମସ୍ୟାର ସମାଧାନ ହେଇଯିବ । ହୁଏତ ତମ ସମସ୍ୟାର ସମାଧାନ ହେଇଯାଇପାରେ; କିନ୍ତୁ ଏ ସମାଜର ? ତମ ଭଳି ଅନେକ ଅବହେଳିତ ଝିଅମାନଙ୍କ ପାଇଁ ତମେ କିଛି କରିପାରିବନି ।

ସୀମା ଶ୍ରୀକାନ୍ତ !

ଶ୍ରୀକାନ୍ତ ତମେ ମୋ ବାପାଙ୍କୁ ଭଲଭାବେ ଜାଣିଛ ସୀମା । ମୁଁ କେବଳ ତମ ଉତ୍ତରକୁ ଅପେକ୍ଷା କରିଛି ।

ସୀମା ତମ ବାପା ଭାରି ଉଦାର- ବହୁତ ସରଳ । କିନ୍ତୁ ....

ଶ୍ରୀକାନ୍ତ କିନ୍ତୁ କ'ଣ ସୀମା । ବିବାହ ଏକ ବ୍ରତ । ଏକ ପବିତ୍ର ସଂକଳ୍ପ ସୀମା । ଯୌତୁକ ଭଳି କଳଙ୍କ- ବୈବାହିକ ଜୀବନର ପବିତ୍ରତାକୁ ନଷ୍ଟ କରେ । ବିବାହର ଉଦ୍ଦେଶ୍ୟ କେବଳ ଭୋଗ ନୁହେଁ, ଯୌତୁକ

Digitized by srujanika@gmail.com

ନୁହେଁ । ପରିବାର ଓ ସମାଜକୁ ନଷ୍ଟ ସୁସନ୍ତାନ ପ୍ରଦାନ କରିବା ହିଁ ବିବାହ । ମୁଁ ଜାଣେ ସୀମା ତମେ ହିଁ ମତେ ପ୍ରକୃତ ସାହଚର୍ଯ୍ୟ ଦେଇପାରିବ ।

ସୀମା ତମ ବିଶ୍ୱାସକୁ ମୁଁ କେବେ ଭାଙ୍ଗି ଦେବିନି ଶ୍ରୀକାନ୍ତ ।

ଶ୍ରୀକାନ୍ତ ସୀମା ! ଶୁଣ ସୀମା, ଆମ ବାହାଘରରେ ଆଡ଼ମ୍ବର ଦରକାର ନାହିଁ । କେବଳ ଗୁରୁଜନଙ୍କର ଆଶୀର୍ବାଦ ହିଁ ଆମ ବିବାହର ସାକ୍ଷୀ, ଆମ ଜୀବନର ହସ୍ତାକ୍ଷର ।

ସୀମା ମୋର କିଛି କହିବାର ନାହିଁ ଶ୍ରୀକାନ୍ତ ।

ଶ୍ରୀକାନ୍ତ ସୀମା ! ଆମଭଳି କେତୋଟି ଆଦର୍ଶ ବିବାହ ହିଁ ଏ ସମାଜକୁ ବଦଳେଇ ଦେଇପାରିବ । ବାପାମାଆଙ୍କ ଆଖି ଖୋଲି ଦେଇପାରିବ । ଏଥିପାଇଁ ଯଦି ନିନ୍ଦା ସହିବାକୁ ହୁଏ ଆମେ ସହିଯିବା ।

ସୀମା ମୁଁ ଜାଣେ ଶ୍ରୀକାନ୍ତ । କିଛି ପାଇବାକୁ ହେଲେ କିଛି ତ୍ୟାଗ କରିବାକୁ ହୁଏ ।

ଶ୍ରୀକାନ୍ତ ଆସ ସୀମା । ଏଇ ମୁହୂର୍ତ୍ତରେ ଆମେ ଆମ ଜୀବନର ଆଦର୍ଶ ହସ୍ତାକ୍ଷରକୁ ଲିପିବଦ୍ଧ କରିଯିବା । ଆଗାମୀ ଦିନର ଯୁବସମାଜ- ଏଇ ହସ୍ତାକ୍ଷରକୁ ଦେଖି- ନିଜ ଜୀବନର ଗତିପଥକୁ ସଜାଡ଼ିନେବ । ମଣିଷ ତାର ଚେତନାକୁ କଳଙ୍କମୁକ୍ତ କରିବ ।



(ଆକାଶବାଣୀ, କଟକ କେନ୍ଦ୍ରରୁ ପ୍ରସାରିତ)

Digitized by srujanika@gmail.com



ଶ୍ରୀମତୀ ପ୍ରମିଳା ପତି ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଏକ ପରିଚିତ ନାମ । କ୍ଷୁଦ୍ରଗଳ୍ପ, କବିତା, ଗୀତିକବିତା, ଫିଚର, ଶିଶୁ ସାହିତ୍ୟ, ବ୍ୟଙ୍ଗ ଓ ହାସ୍ୟରସାତ୍ମକ ଏକାଙ୍କିକା, ସଂସ୍କାରଧର୍ମୀ କ୍ଷୁଦ୍ର ନାଟକ ଲେଖିବା ସହିତ ସମାଜ ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଓଡ଼ିଶାର ବିଭିନ୍ନ ସାହିତ୍ୟ ଅନୁଷ୍ଠାନ, ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସେ ଜଡ଼ିତ । ପଶୁପକ୍ଷୀମାନଙ୍କର ସେବା, ଯତ୍ନ କରିବାରେ ସେ ଜଣେ ଜଣାଶୁଣା ମହିଳା । ସେ ୧୯୮୯ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର ସ୍ୱୀକୃତିପ୍ରାପ୍ତ ଗୀତିକାର ଓ ନାଟ୍ୟକାର ଭାବେ ଅନେକ ସୁଖ୍ୟାତି ଅର୍ଜନ କରିଛନ୍ତି । ଶିକ୍ଷା- ବି.ଏ., ସିଟି । ଜଣେ ଆଦର୍ଶ ଶିକ୍ଷୟିତ୍ରୀ ଭାବେ ମଧ୍ୟ ତାଙ୍କର ଅନେକ ସୁନାମ ରହିଛି ।

**ପ୍ରକାଶିତ ପୁସ୍ତକ :** ଶତାବ୍ଦୀର ଯନ୍ତ୍ରଣା (କବିତା ସଂକଳନ), ଅହଲ୍ୟା (କ୍ଷୁଦ୍ର ଗଳ୍ପ ସଂକଳନ), ଝରକା ପାଖର ଜହ୍ନ (ଆଧୁନିକ ଗୀତି କବିତା ସଂକଳନ), ଚିତିରିମିତିର (ଶିଶୁ-କିଶୋର କବିତା ସଂକଳନ), ତୋ' ବିନୁ ଅନ୍ୟ ଗତି ନାହିଁ (ଭଜନ-ଜଣାଣ ସଂକଳନ), ହସ୍ତାକ୍ଷର (କ୍ଷୁଦ୍ର ନାଟକ ସଂକଳନ), ମୀନା ଜିତିଲା (ଶିଶୁ କିଶୋର ଗଳ୍ପ ସଂକଳନ), ଅନ୍ଧାରୀମନ (କ୍ଷୁଦ୍ର ଗଳ୍ପ ସଂକଳନ), ଏ ଯୁଗର ମହାସତୀ (ବ୍ୟଙ୍ଗ ହାସ୍ୟରସାତ୍ମକ) ରହିଛି । ହସ୍ତାକ୍ଷର ନାଟିକାଟି ଲେଖିକାଙ୍କର ସପ୍ତମ ଅର୍ଘ୍ୟ ।

**ପୁରସ୍କାର ଓ ସମ୍ବର୍ଦ୍ଧନା :** ପ୍ରଜ୍ଞା ଶିଶୁ-କିଶୋର ସାହିତ୍ୟ ସଂସଦ, ନୟାଗଡ଼, ସୁଲେଖା, ପୁରୀ, ଉଦୟଭାନୁ ସାହିତ୍ୟ ସଂସଦ- କଟକ, ରାଜ୍ୟ କଳା ଗବେଷଣା ପରିଷଦ- କଟକ, ଯୁବ ମହୋତ୍ସବ- ୨୦୦୩- କଟକ, ଜଗନ୍ନାଥ ସାହିତ୍ୟ ସଂସ୍କୃତି ପରିଷଦ- ଭଦ୍ରକ, ଫକୀରମୋହନ ସ୍ମୃତି ସଂସଦ, ଡିମିରି-ନୋଦା, ଆଶ୍ରୟ-ଶରଣ-କୁଳ, ଶ୍ୱେତ ସଂକେତ- ଭୁବନେଶ୍ୱର, ଓଡ଼ିଶା ଲେଖିକା ସଂସଦ-ଭୁବନେଶ୍ୱର, ଶିଳାଶ୍ରୀ କବିତାୟନ- ଭୁବନେଶ୍ୱର, ସାହିତ୍ୟ ବାର୍ତ୍ତା-ଯାଜପୁର, ବନଜ୍ୟୋତ୍ସ୍ନା ସାହିତ୍ୟ ସଂସଦ- ଫୁଲବାଣୀ, ଜିଲ୍ଲାସ୍ତରୀୟ ଶିଶୁ-ସାହିତ୍ୟ ସଂସଦ- କେଉଁଝର, ତୁଳସୀକ୍ଷେତ୍ର-କେନ୍ଦ୍ରାପଡ଼ା, ଜୟଭାରତୀ ସାଥୀ ସମାଜ- ଚାନ୍ଦୋଳ, କେନ୍ଦ୍ରାପଡ଼ା ପ୍ରମୁଖ ବହୁ ସାହିତ୍ୟ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ସମ୍ମାନିତା ଓ ସମ୍ବର୍ଦ୍ଧିତା ।

Digitized by srujanika@gmail.com